# ସମ୍ବଲପୁର ଯାତ୍ରା

ଇଂରେଜ ବଣିକ ମଟ ସାହେବଙ୍କ ଲିଖିତ ଅଷ୍ଟାଦଶ
ଶତାବ୍ଦୀର ଭ୍ରମଣବୃତ୍ତାନ୍ତ

ଅନୁବାଦକ—ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ

ପ୍ରକାଶକ—
ଉତ୍କଳ ବିଶ୍ୱବିଦ୍ୟାଳୟ
କଟକ

ମୂଲ୍ୟ ଟ ୧୲ (ଏକ ଟଙ୍କା ମାତ୍ର)

# ମୁଖବନ୍ଧ

ଓଡ଼ିଶାରେ ଇଂରେଜ ଅଧିକାର ଓଡ଼ିଶା ଇତିହାସର ଅଧ୍ୟାୟବିଶେଷ । ଏହାର ବିସ୍ତୃତ ବିବରଣ ସମସାମୟିକ କାଗଜପତ୍ରରୁ ସଂଗ୍ରହ କରି ଟଏନବି ସାହେବ (Mr. Toynbee) ଇଂରାଜୀ ଭାଷାରେ ଯେଉଁ ପୁସ୍ତକ ଲେଖିଥିଲେ, ସ୍ୱର୍ଗୀୟ ଜଗନ୍ମୋହନ ଲାଲଙ୍କ "ଓଡ଼ିଶା ବିଜୟ" ପୁସ୍ତକ ତାହାର ପ୍ରଥମ ଭାଗର ଅବିକଳ ଅନୁବାଦ । ମାତୃଭାଷାରେ ଅନୁବାଦଦ୍ୱାରା ଇତିହାସ ପ୍ରଚାରର ଏହା ସର୍ବପ୍ରଥମ ନିଦର୍ଶନ ; ଏଣୁ ଲାଲ ମହାଶୟଙ୍କର ଏ ଉଦ୍ୟମ ଯଥାର୍ଥ ପ୍ରଶଂସନୀୟ । ଏ ପୁସ୍ତକର ପ୍ରଥମ ମୁଦ୍ରଣ ୧୮୭୬ ଖ୍ରୀଷ୍ଟାବ୍ଦରେ ଓ ଦ୍ୱିତୀୟ ମୁଦ୍ରଣ ୧୮୯୯ ଖ୍ରୀଷ୍ଟାବ୍ଦରେ ହୋଇଥିଲା ।

୧୭୬୬ ଖ୍ରୀଷ୍ଟାବ୍ଦରେ ମି: ଟମାସ ମଟ (Mr. T. Motte) ନାମକ ଜଣେ ଇଂରେଜ ବଣିକ ହୀରାବ୍ୟବସାୟ ଉଦ୍ଦେଶ୍ୟରେ କଲିକତାରୁ ସମ୍ବଲପୁର ଯାଇଥିଲେ । ହୀରା କାରବାର ଛଡ଼ା ଓଡ଼ିଶା ପ୍ରଦେଶ ରାଜନ ମରହଟ୍ଟା-ମାନଙ୍କ ସହିତ କେତେକ ରାଜନୈତିକ ପରାମର୍ଶ କରିବା ମଧ୍ୟ ତାଙ୍କ ଯିବାର ଅନ୍ୟ ଉଦ୍ଦେଶ୍ୟ ଥିଲା ।

ଏହି ଭ୍ରମଣବୃତ୍ତାନ୍ତ ସର୍ବପ୍ରଥମ Asiatic Miscellany, Vol II, Calcutta 1786 ପୁସ୍ତକରେ ଓ ତତ୍ପରେ 'Asiatic Annual Register, Vol. I for the year 1799' ପୁସ୍ତକରେ ମୁଦ୍ରିତ ହୋଇଥିଲା । ପ୍ରବନ୍ଧର ଶିରୋନାମା ଥିଲା—A Narrative of a Journey to the Diamond Mines at Sumbhulpoor, in the Province of Orissa, by T. Motte Esqr, (undertaken in the year 1766 by the direction of late Lord Clive, the Governor of Bengal).

ମି: ମଟ ଓଡ଼ିଶା ଇତିହାସର ପାଠକ ପାଠିକାମାନଙ୍କର ସମ୍ପୂର୍ଣ୍ଣ ଅପରିଚିତ ନୁହନ୍ତି । ଷ୍ଟାର୍ଲିଂ ସାହେବ ଏହାଙ୍କ ନାମ ବାରବାଟୀ ଦୁର୍ଗ ବର୍ଣ୍ଣନାରେ ଉଲ୍ଲେଖ କରିଥିଲେ । ସେଥିରେ ଟିକିଏ ଭୁଲ ଥିଲା । ସେ ଲେଖିଥିଲେ, 'M. La Motte, who visited through the Province in 1767 A. D.' ତାଙ୍କର ଏହି କଥାଗୁଡ଼ିକ ଟଏନବି ସାହେବ ମଧ୍ୟ ଉଦ୍ଧୃତ କରିଥିଲେ । ସ୍ୱର୍ଗୀୟ ଲାଲ ଓ କୃପାସିନ୍ଧୁ ମିଶ୍ର ଉଭୟ ଏହାର ଓଡ଼ିଆ ଅନୁବାଦ କରିଥିଲେ ¹ । ସମ୍ବଲପୁର ଗେଜେଟିୟର (୧୯୦୯) ପୁସ୍ତକରେ ଏହି ବିବରଣରୁ କେବଳ ସମ୍ବଲପୁର ବୃତ୍ତାନ୍ତ ମୁଦ୍ରିତ ହୋଇଅଛି ² । ମଧ୍ୟପ୍ରଦେଶର ଗଭର୍ଣ୍ଣମେଣ୍ଟ 'Early European Travellers in Nagpur Kingdom' ନାମକ ପୁସ୍ତକରେ ସମସ୍ତ ବିବରଣ ଛପାଇ ଅଛନ୍ତି ।

ମି: ମଟ ୧୭୬୬ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ୧୩ ତାରିଖରେ କଲିକତାରୁ ବାହାରି ମେଦିନୀପୁର ଓ ବୀରକୁଳ ଭିତରେ ପଶି ୨୩ ତାରିଖରେ ଜଲେଶ୍ୱରରେ ପହଞ୍ଚିଥିଲେ । ସେଠାରୁ ୨୫ ତାରିଖରେ ବାହାରି ରାଜଘାଟ, ଅମର୍ଦା, ବସ୍ତା, ଗଡ଼ପଦା, ରାମଚନ୍ଦ୍ରପୁର ଗ୍ରାମଗୁଡ଼ିକ ଅତିକ୍ରମ କରି ଫୁଲ୍ଲଡ଼ିଘାଟରେ ବୁଢ଼ାବଳଙ୍ଗ ନଦୀ ପାର ହୋଇ ବାଲେଶ୍ୱର ଆସିଥିଲେ । ସେଠାରୁ ଏପ୍ରିଲ ମାସ ୨୭ ତାରିଖରେ ସୋରୋ ଅଭିମୁଖରେ ଯାତ୍ରା କରିଥିଲେ । ସୋରୋରୁ ୨୯ ତାରିଖରେ ବାହାରି ଭଦ୍ରଖ, ଯାଜପୁର ପ୍ରଭୃତି ବହୁ ଅଞ୍ଚଳ ଅତିକ୍ରମ କରି ମଇ ମାସ ୭ ତାରିଖରେ କଟକରେ ଉପନୀତ ହେଲେ । କଟକରୁ ୧୦ ତାରିଖରେ ବାହାରି ୧୮ ତାରିଖରେ ବଡ଼ମୂଳଘାଟିରେ ରହିଲେ । ପରଦିନ ସେଠାରୁ ବାହାରି ୨୨ ତାରିଖରେ ବୌଦ୍ଧ କଲ୍ଲରେ ପହଞ୍ଚିଲେ । ୨୫ ତାରିଖରେ ବୌଦ୍ଧରୁ ବାହାରି ୩୧ ତାରିଖରେ ସମ୍ବଲପୁର

୧ । "ଓଡ଼ିଶାଚନ୍ଦ୍ରିକା"—୭ ପୃ ଓ ବାରବାଟୀ ଦୁର୍ଗ—୫୮ ପୃ
୨ । District Gazetteer—Sambalpore—pp. 40—52.

ରାଜଧାନୀରେ କଲିକତା ଛାଡ଼ିବାର ଅଢ଼େଇ ମାସ ପରେ ଉପନୀତ ହେଲେ । ବର୍ଷାକାଳ ହେତୁରୁ ସମ୍ବଲପୁରରେ ତାଙ୍କୁ ୪ ମାସ କାଳ ରହିବାକୁ ପଡ଼ିଥିଲା । ଅକ୍ଟୋବର ୩ ତାରିଖରେ କଲିକତା ଅଭିମୁଖରେ ଯାତ୍ରା କରି ୧୯ ତାରିଖରେ କଟକକୁ ଲେଉଟିଲେ । ୨୩ ତାରିଖରେ କଟକରୁ ବାହାରି ବାଲେଶ୍ୱର ଆସି ନଭେମ୍ବର ୨ ତାରିଖରେ ସୁବର୍ଣ୍ଣରେଖା ନଦୀ ପାର ହୋଇ ଇଂରେଜ ଅଧିକୃତ ରାଜ୍ୟରେ ପଦାର୍ପଣ କରି ବିଶେଷ ଆନନ୍ଦିତ ହୋଇଥିଲେ । ସେ ଯେତେଗୁଡ଼ିଏ ସ୍ଥାନ ଦେଖିଥିଲେ, ସେଗୁଡ଼ିକ ସମ୍ବନ୍ଧରେ ନାନା କଥା ଲେଖିଅଛନ୍ତି ।

ମଟ ସାହେବଙ୍କ ଭ୍ରମଣବୃତ୍ତାନ୍ତରେ ଓଡ଼ିଶାର ବହୁବିଧ ବିବରଣ ସନ୍ନି-ବେଶିତ ହୋଇଅଛି । ସେଥିମଧ୍ୟରୁ ମରହଟ୍ଟା ଶାସନାରମ୍ଭର ଉତ୍କଟ ଚିତ୍ର ଯେପରି ଭାବରେ ପ୍ରଦତ୍ତ ହୋଇଅଛି, ତାହା ଅନ୍ୟତ୍ର ବିରଳ । ଏହି ହେତୁରୁ ଏହାର ଅନୁବାଦରେ ବ୍ରତୀ ହୋଇଥିଲି । ଆଶା କରେଁ, ମୋର ଶ୍ରମ ବିଫଳ ହେବ ନାହିଁ ।

୧୩୩୬ ସାଲର ୩୨ ଭାଗ 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏହି ପ୍ରବନ୍ଧଟି ଧାରାବାହିକ ଭାବରେ ମୁଦ୍ରିତ ହୋଇଥିଲା । ଏଥିପାଇଁ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ସ୍ୱର୍ଗୀୟ ବିଶ୍ୱନାଥ କରଙ୍କ ଠାରେ ମୁଁ କୃତଜ୍ଞ ।

—ଅନୁବାଦକ

---

# ସମ୍ବଲପୁର ଯାତ୍ରା

୧୭୬୭ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସର ଅଧାଅଧିରେ **ସର୍ଦ୍ଦାର ଖାଁ** ନାମକ ଜଣେ କର୍ମଚାରୀଙ୍କୁ ସମ୍ବଲପୁର ରାଜା କଲିକତା ପଠାଇଥିଲେ ଓ ହୀରା କଣିବା ନିମିତ୍ତ ଜଣେ ବିଶ୍ୱାସୀ ଲୋକ ତାଙ୍କ ରାଜଧାନୀକୁ ପଠାଇବା ସକାଶେ ଗଭର୍ଣ୍ଣର ସାହେବଙ୍କୁ ଅନୁରୋଧ କରି ପତ୍ର ଲେଖିଥିଲେ । ସେହି ସମୟରେ ଚାରିଜଣ ପଠାଣ ବ୍ୟବସାୟୀ ମଧ୍ୟ କଲିକତା ଆସିଥିଲେ । ରାଜା ସେମାନଙ୍କଠାରୁ କେତୋଟି ଘୋଡ଼ା ଖରିଦ କରିଥିଲେ ଓ ଘୋଡ଼ାର ମୂଲ୍ୟ ଦେଇ ନ ପାରି ସେମାନଙ୍କୁ କହିଥିଲେ ଯେ କଲିକତାରେ ହୀରା ବିକ୍ରୟରୁ ଟଙ୍କା ମିଳିଲେ ଘୋଡ଼ାର ଦାମ ଦିଆଯିବ । ଏହା କହି ଉକ୍ତ କର୍ମଚାରୀ ହସ୍ତରେ ଖଣ୍ଡିଏ ଅକଟା ହୀରା ପଠାଇଥିଲେ । ହୀରାଟିର ଓଜନ ୮ ମଷା ୨ ରତି ।

ଏହି ସମୟରେ **ମୋହନପ୍ରସାଦ** ନାମକ ଜଣେ ଅସଚ୍ଚରିତ୍ର ଲୋକ କଲିକତାରେ ଥିଲା । ସେ ନବାଗତମାନଙ୍କର ପରିଚୟ ପାଇ ତାଙ୍କ କାର୍ଯ୍ୟରେ ମୁରୁବିପଣିଆ ଦେଖାଇ କେଉଁଠାରେ କଣ କରିବା ପ୍ରୟୋଜନ, ତାହା ଉପଦେଶ ଦେଉଥିଲା । ସର୍ଦ୍ଦାର ଖାଁ ତାହାରି କବଳରେ ପଡ଼ିଗଲା । ସେ **ଲର୍ଡ କ୍ଲାଇବଙ୍କ** ସହିତ ସର୍ଦ୍ଦାର ଖାଁଙ୍କୁ ଆଳାପ କରାଇ ଦେଇ ରାଜାଙ୍କର ଉପଢ଼ୌକନସ୍ୱରୂପ ହୀରାଖଣ୍ଡିକ ଗଭର୍ଣ୍ଣର ସାହେବଙ୍କୁ ଦେବା ସକାଶେ ସର୍ଦ୍ଦାର ଖାଁଙ୍କୁ ବାଧ୍ୟ କଲା । ମୂଲ୍ୟପ୍ରାପ୍ତିର ସୁବିଧାରୁ ବଞ୍ଚିତ ହେବାର ଦେଖି ପଠାଣ ବ୍ୟବସାୟୀମାନେ ଗଭର୍ଣ୍ଣର ସାହେବଙ୍କ ଠାରେ ଆପତ୍ତି କଲେ । ଲର୍ଡ କ୍ଲାଇବ ଆପତ୍ତିର କାରଣ ଅବଗତ ନ ଥିଲେ । ଏହି ସମୟରେ ସର୍ଦ୍ଦାର ଖାଁ ଓ ମୋହନପ୍ରସାଦ ଉଭୟ ଗରିବ ବ୍ୟବସାୟୀ-ମାନଙ୍କୁ ବୁଝାଇଦେଲେ ଯେ, ଜଣେ ସାହେବ ସମ୍ବଲପୁର ଯାଇ ସେଠାରେ ଘୋଡ଼ାର ଦାମ ଦେବେ ।

ସେ ସମୟରେ ଗଭର୍ଣ୍ଣର ସାହେବ ବିଲାତକୁ ଅର୍ଥପ୍ରେରଣ ନିମିତ୍ତ ବିଶେଷ ଚିନ୍ତିତ ଥିବାରୁ ମୋଠାରେ ପ୍ରସ୍ତାବ କଲେ ଯେ, ମୁଁ ରାଜାଙ୍କର ଉକିଲ ସହିତ ହୀରାଖଣି ଦେଖିବାକୁ ଯିବି ଓ ହୀରା କାରବାର ଚଳାଇବାର ବ୍ୟବସ୍ଥା କରିବି । ଏହା ଯୌଥ କାରବାରରୂପେ ଚଳାଇବାର ବ୍ୟବସ୍ଥା କରି ସେ କହିଲେ ଯେ, ସେଥିରେ ମୋର ଏକତୃତୀୟାଂଶ ଓ ତାଙ୍କର ଦୁଇତୃତୀୟାଂଶ ଭାଗ ରହିବ; ଆଉ ବ୍ୟସୂଯାକ କାରବାର ବହନ କରିବ । ପ୍ରସ୍ତାବ ଶୁଣି ମୋର ଚିତ୍ତ ବିହ୍ୱଳ ହୋଇଗଲା ଏବଂ ପଥଭ୍ରମଣର କଷ୍ଟ ବା ଉକ୍ତ ଅଭିପ୍ରାୟରେ ମି. ହେନେରି ଭାନ୍ସିଟାର୍ଟଙ୍କ ଦ୍ୱାରା ପ୍ରେରିତ ମି. ମୋଲଙ୍କ ଯେଉଁ ଦେଶରେ ୨୪ ଘଣ୍ଟା ମାତ୍ର ରହିବାକୁ ଅକ୍ଷମ ହୋଇଥିଲେ, ସେହି ଦେଶର ଅସୁବିଧା ପ୍ରତି ବିନ୍ଦୁମାତ୍ର ଆସ୍ଥା ନ ରଖି ତାଙ୍କ ପ୍ରସ୍ତାବ ଗ୍ରହଣ କରିଥିଲି ।

ଆହୁରି ମଧ୍ୟ ମରହଟ୍ଟାମାନଙ୍କର ରାଜନୈତିକ ଅବସ୍ଥା ଜାଣିବାପାଇଁ ଗଭର୍ଣ୍ଣର ସାହେବଙ୍କର ଉପଦେଶ ଥିଲା । ସେ ଅନୁମାନ କରିଥିଲେ ଯେ, ଏତେ ଶିଥିଳତାପୂର୍ଣ୍ଣ ଶାସନତନ୍ତ୍ର ସହଜରେ ଛିନ୍ନଭିନ୍ନ ହେବା ସମ୍ଭବ ଏବଂ ଏହା ଦ୍ୱାରା ଭାରତର ଏକ ପ୍ରବଳ ପରାକ୍ରାନ୍ତ ଜାତି ଅକ୍ଲେଶରେ ଦୁର୍ବଳ ଓ ଶକ୍ତିହୀନ ହୋଇଯିବ । ବାର୍ଷିକ କର ଗ୍ରହଣ କରି ଓଡ଼ିଶା ପ୍ରଦେଶ ଇଂରେଜମାନଙ୍କ ହସ୍ତରେ ଅର୍ପଣ କରିବା ନିମିତ୍ତ ଜାନୋଜିଙ୍କ ଦରବାରର କର୍ମଚାରୀମାନଙ୍କ ସହିତ ପରାମର୍ଶ କରିବାପାଇଁ ସେ ମୋତେ ଉପଦେଶ ଦେଇଥିଲେ । ଏହାଦ୍ୱାରା ପୂର୍ବ-ଭାରତରେ ବ୍ରିଟିଶ ଅଧିକାରଭୁକ୍ତ ରାଜ୍ୟମାନ ତଫାତ୍ ନ ରହି ସାମିଲ ହେବ ଓ ଇଂରେଜମାନେ ଅଧିକ ଶକ୍ତିଶାଳୀ ହୋଇ ପାରିବେ ।

ମାର୍ଚ୍ଚ ମାସ ୧୩ ତାରିଖରେ **କଲିକତା**ରୁ ବାହାରି ମେଦିନୀପୁର ଅଭିମୁଖରେ ଯାତ୍ରା କଲି । ସେଠାରୁ ମି. ଜନ ଗ୍ରାହାମଙ୍କୁ ଖୋଜି ଖୋଜି ଦେଶଯାକ ବୁଲି ଆସିଲି । ମି. ଗ୍ରାହାମ ମୋର ଜଣେ ପୁରାତନ ବନ୍ଧୁ ।

ମୋର ବନ୍ଧୁବର୍ଗଙ୍କ ମଧ୍ୟରେ ତାଙ୍କର ବିଶେଷ ଘନିଷ୍ଠତା ଥିବାରୁ ତାଙ୍କଠାରୁ ପରାମର୍ଶ ନେବା ଓ ବିଦାୟ ଘେନିବା ମୋର ଆନ୍ତରିକ ଅଭିପ୍ରାୟ ଥିଲା ।

**ବୀରକୁଳ**ଠାରେ ତାଙ୍କ ସହିତ ସାକ୍ଷାତ ହେଲା । ବୀରକୁଳ ସମୁଦ୍ର ଉପକଣ୍ଠରେ ଅବସ୍ଥିତ । ଏହିଠାରେ ସେହି ଆକାଶତଳ ପ୍ରସାରିତ ମହାମହିମ ବିଶାଳ ଓ ଭୟଙ୍କର ସାଗରର ଦୃଶ୍ୟ ମୋର ନୟନପଥାରୂଢ଼ ହୋଇଥିଲା । ଏ ଦେଶରେ ନିବାସିତ ୟୁରୋପୀୟମାନେ ସମୁଦ୍ରକୁ ଆନନ୍ଦପୂର୍ଣ୍ଣ ଓ ଖେଦବିଜଡ଼ିତ ଚକ୍ଷୁରେ ଦେଖନ୍ତି; କାରଣ, ସେମାନଙ୍କ ଚକ୍ଷୁରେ ସମୁଦ୍ର ସ୍ୱଦେଶ ପ୍ରତ୍ୟାବର୍ତ୍ତନର ପଥସ୍ୱରୂପ ପ୍ରତୀୟମାନ ହୁଏ ।

ଏଠାରୁ ମି. ଗ୍ରାହାମଙ୍କ ସହିତ ମୁଁ **ଜଳେଶ୍ୱର** ଗଲି । ବାଟରେ **ପଶ୍ଚିମବାଡ଼**ଠାରେ* ଗୋଟିଏ ବଟବୃକ୍ଷ ମୂଳରେ ବିଶ୍ରାମ କଲୁଁ । ପ୍ରଶାଖାରୁ ଓହଳ ବାହାରି ତହିଁରୁ ପୁଣି ଶାଖାପ୍ରଶାଖା ବିସ୍ତାରିତ ହୋଇ ୬୨୦ ଫୁଟ ପରିଧିବିଶିଷ୍ଟ ସ୍ଥାନ ଉପରେ ବୃକ୍ଷଟି ଛାୟା ବିସ୍ତାର କରିଥିଲା । ମୋର ମନେ ହୁଏ, ଏହି ବୃକ୍ଷର ଶାଖାପ୍ରଶାଖା ଇଚ୍ଛାନୁରୂପ ସ୍ଥାନରେ ବ୍ୟାପୃତ ହେଲେ ମଧ୍ୟ ମୂଳବୃକ୍ଷର କ୍ଷୟ ଆଦୌ ସାଧିତ ହୁଏ ନାହିଁ । କାରଣ ମୂଳବୃକ୍ଷ ନିଜର ଶାଖାପ୍ରଶାଖା ବିସ୍ତାର କରି ବର୍ଦ୍ଧିତ ହୁଏ ଓ ତହିଁରୁ ଶାଖାପ୍ରଶାଖା ଛିନ୍ନ ହେଲେ ମଧ୍ୟ ମୂଳବୃକ୍ଷର ଅନିଷ୍ଟ ହୁଏ ନାହିଁ । ଏହା ମଧ୍ୟ ଠିକ ଯେ, ଏହାର ପ୍ରତ୍ୟେକ ଓହଳ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ବୃକ୍ଷ ।

ଆମ୍ଭେମାନେ ୨୭ ତାରିଖରେ ଜଳେଶ୍ୱରଠାରେ ଉପନୀତ ହେଲୁଁ । ସେଠାରେ ବାଲେଶ୍ୱରର ରେସିଡେଣ୍ଟ ମି. ମେରିଅଟଙ୍କ ସହିତ ସାକ୍ଷାତ ହେଲା । ଇଂରେଜ ରାଜ୍ୟର ଦକ୍ଷିଣ ସୀମାରେ ପ୍ରବାହିତ ସୁବର୍ଣ୍ଣରେଖା କୂଳବର୍ତ୍ତୀ ଜଳେଶ୍ୱର ଗୋଟିଏ କ୍ଷୁଦ୍ର ସହର । ଓଡ଼ିଶାରେ ମରହଟ୍ଟାମାନଙ୍କର କିଛି ସୈନ୍ୟ ରହୁଥିଲା ବେଳେ ଦଳେ ସୈନ୍ୟ ଏଠାରେ ରହୁଥିଲେ ।

---

* ଜଳେଶ୍ୱର ଥାନା ଅନ୍ତର୍ଗତ ପ୍ରସିଦ୍ଧ ଗ୍ରାମର ନାମ ।

ସେମାନେ ଟିକିଏ ଶାନ୍ତ ହେବା ଦିନଠାରୁ ଏଠାରେ ଅଲ୍ପ ମାତ୍ର ସିପାହି ରହୁଅଛନ୍ତି ।

ମି. ମେରିଅଟଙ୍କ ସହିତ ୨୭ ତାରିଖରେ ସୁବର୍ଣ୍ଣରେଖା ପାର ହୋଇ **ମୟୂରଭଞ୍ଜ** (Mohur Bhunge) ରାଜ୍ୟରେ ପଦାର୍ପଣ କଲି । ସୁବର୍ଣ୍ଣରେଖାଠାରୁ ଏକ ମାଇଲ ଦୂରରେ ରାସ୍ତାର ଦକ୍ଷିଣରେ ଥିବା **ଅମର୍ଦାନଗର** * ଗଡ଼ ଅବସ୍ଥିତ । ଏହି ଗଡ଼ଟି ଏ ଦେଶୀୟ ଦୁର୍ଗଗଠନ ପ୍ରଣାଳୀ ଅନୁସାରେ ନିର୍ମିତ । ଗଡ଼ଖାଇ ଖୋଳା ହେବାର ମାଟି ଗଡ଼ପଟରେ ପଡ଼ିବାରୁ ଆଡ଼ଟିଏ ତିଆରି ହୁଏ, ଆଡ଼ ଉପରେ ବାଉଁଶବୁଦା ଲଗା ହୁଏ । ବାଉଁଶର କଣ୍ଟାଗୁଡ଼ିକ ପ୍ରାୟ ୩ ଇଞ୍ଚ ଲମ୍ବ, ଶକ୍ତ ଓ ତୀକ୍ଷ୍ଣ ହୁଏ ବୋଲି ଗଡ଼ଭିତରକୁ ପ୍ରବେଶ କରିବା ଦୁଷ୍କର ହୁଏ । ମାତ୍ର ମଇ ମାସରେ ଏଗୁଡ଼ିକୁ ଆଦୌ ଭରସା ନ ଥାଏ; କାରଣ ଖରା ଦିନରେ ବାଉଁଶ ସହଜରେ ପୋଡ଼ିଯାଏ । ଯଦି ପବନବେଳେ ନିଆଁ ଲଗାଇ ଦିଆଯାଏ, ତେବେ ବାଉଁଶଗଛ ପ୍ରଚଣ୍ଡଭାବରେ ଜଳି ଉଠେ, ଗଣ୍ଠିରେ ନିଆଁ ଲାଗିଲେ ପିସ୍ତଲ ଶବ୍ଦ ପରି ଶବ୍ଦ କରି ଗଣ୍ଠିଗୁଡ଼ିକ ଫୁଟିଯାଏ ।

ନଦୀଠାରୁ **ମୁଲଡାନି**ର† ବରଗଛ ପର୍ଯ୍ୟନ୍ତ ପଥପାର୍ଶ୍ୱବର୍ତ୍ତୀ ସମସ୍ତ ସ୍ଥାନ କୃଷିକ୍ଷେତ୍ରରେ ପୂର୍ଣ୍ଣ । ତହିଁରୁ ଅନେକ ପଡିତ ଥିଲା । କ୍ଷେତ୍ରର ଚତୁଃପାର୍ଶ୍ୱର ବନ୍ଧ ଉପରେ ଗୁଳ୍ମାଦି ବୃକ୍ଷ ଜାତ ହୋଇଥିଲା । ଏଣୁ ଏ ଅଞ୍ଚଳ ଖୁବ୍ ଉନ୍ନତ ନୁହେ । ନଦୀଠାରୁ ଏ ବରଗଛର ଦୂରତ୍ୱ ୭ ମାଇଲ । ଏଠାରୁ ଜଙ୍ଗଲ ଭିତରେ ଭିତରେ ପ୍ରଥମ ପ୍ରଥମ ପଥଟି ପ୍ରସାରିତ, ମାତ୍ର ବସ୍ତା ଆଡ଼କୁ ବଡ଼ ସଙ୍କୀର୍ଣ୍ଣ ।

---

* ଏହାର ଆଧୁନିକ ନାମ ଅମର୍ଦା । ଏଠାରେ ବର୍ଣ୍ଣିତ ଗଡ଼ର ଧ୍ୱଂସାବଶେଷ ଓ ଗୋଟିଏ ପ୍ରକାଣ୍ଡ ପୁଷ୍କରଣୀ ଅଛି ।

† ମୁଲଡାନ ଗ୍ରାମ ଅମର୍ଦାରୋଡ଼ ଷ୍ଟେସନର ପଶ୍ଚିମରେ ପୁରୁଣା ଜଗନ୍ନାଥ ସଡ଼କ ନିକଟରେ ଅବସ୍ଥିତ ।

**ବସ୍ତା** ଗୋଟିଏ ବୃହତ୍ ଗ୍ରାମ । ବରଗଛଠାରୁ ୭ ମାଇଲ ଦୂରବର୍ତ୍ତୀ ରାସ୍ତାରେ ଏହା ମରହଟ୍ଟାମାନଙ୍କର ପ୍ରଥମ ଚୌକି । ଏଠାରେ ଜଣେ ଥାନାଦାର ଓ ୨୦ ଜଣ ସିପାହୀ ରହନ୍ତି । ଗ୍ରାମଠାରୁ ୧୦୦ ଗଜ ଦୂରରେ ଗୋଟିଏ କ୍ଷୁଦ୍ର ନଦୀ ପ୍ରବାହିତ; ଏହି ନଦୀଟି ସୁବର୍ଣ୍ଣରେଖା ସହିତ ମିଳିତ ହୋଇଅଛି ।

**ବସ୍ତା** ପରେ ପଥ କ୍ରମଶଃ ଉନ୍ନତ ବୋଲି ମନେ ହେଲା । ଏଠାରୁ ୩୍ୟ ପା ଦୂରରେ ଗୋଟିଏ ନଦୀ ଓ ୨ ମାଇଲ ପରେ ଆଉ ଗୋଟିଏ ନଦୀ ପାର ହେଲି । ଏ ଉଭୟ ଯାକ ନଦୀ ସୁବର୍ଣ୍ଣରେଖାରେ ପଡ଼ିଅଛି† । ବସ୍ତାରୁ ୫ ମାଇଲ ଗଲେ ଦୁଇଟା ଆଡ଼ଆର ମୁଣ୍ଡ ଦେଖାଯାଏ । ସେଠାରେ ପୂର୍ବେ **ଗଡ଼ପଦା ଗଡ଼**ର ଦ୍ୱାର ଥିଲା । ଏହି ଗଡ଼ ଦେଶୀୟ ରୀତି ଅନୁସାରେ ସୁରକ୍ଷିତ । ଆସଦଲ୍ଲା ମୟୂରଭଞ୍ଜ ରାଜାଙ୍କର କର୍ମଚାରୀ । ଏ ହିନ୍ଦୁଧର୍ମ ତ୍ୟାଗ କରି ମୁସଲମାନ ହୋଇଥିଲା । ଅନ୍ୟାନ୍ୟ ଧର୍ମତ୍ୟାଗୀଙ୍କ ସଦୃଶ ନବଧର୍ମ ପ୍ରତି ଅତିଶୟ ଆଗ୍ରହ ଦେଖାଇ ଏହି ପଥରେ ଗମନକାରୀ ଜଗନ୍ନାଥ ତୀର୍ଥଯାତ୍ରୀଙ୍କଠାରୁ ସେ ପ୍ରଚୁର ଅର୍ଥ କରସ୍ୱରୂପ ସଂଗ୍ରହ କରୁଥିଲା । ରାସ୍ତାର ଦକ୍ଷିଣଦିଗସ୍ଥ ଭିତରଗଡ଼ ବ୍ୟତୀତ ସମସ୍ତ ଗଡ଼ଟିକୁ ମରହଟ୍ଟାମାନେ ଧ୍ୱଂସ କରି-ଥିଲେ। ଏହି ଭିତରଗଡ଼ରେ ଆସଦୁଲ୍ଲାଙ୍କ ପୁତ୍ର ବର୍ତ୍ତମାନ ଖାଁର ନିବାସ । ଏହା ସଲଗ୍ନରେ ଗୋଟିଏ କ୍ଷୁଦ୍ର ଗ୍ରାମ ମଧ୍ୟ ଅଛି ।

ଗଡ଼ପଦାରୁ ଆସି **ରାମଚନ୍ଦ୍ରପୁର**ରେ ପହୁଁଚିଲୁ । ରାମଚନ୍ଦ୍ରପୁରରେ ଗୋଟିଏ ମାଟିର ଗଡ଼ ଅଛି । ଏହା ବାଟରୁ ଦୁଇ ମାଇଲ ପଶ୍ଚିମରେ ଅବସ୍ଥିତ ।

ରାମଚନ୍ଦ୍ରପୁରଠାରୁ ପଥପାର୍ଶ୍ୱସ୍ଥ ସ୍ଥାନସମୂହ ବନାକାର୍ଣ୍ଣ, ମାତ୍ର ବାଲେଶ୍ୱରରୁ ଆସିବା ବାଟରେ ବୁଢ଼ାବଳଙ୍ଗ (Boree Bellaun)

† ପ୍ରକୃତରେ ଏ ନଦୀଦ୍ୱୟ ସୁବର୍ଣ୍ଣରେଖାରେ ପଡ଼ ନାହିଁ । ପ୍ରଥମ ନଦୀଟିର ନାମ ଜମୀରା ଓ ଦ୍ୱିତୀୟଟିର ନାମ ବାଁଶ ।

ନଦୀକୂଳରେ ବିସ୍ତୃତ କୃଷିକ୍ଷେତ୍ର ଦେଖାଯାଏ । ଫୁଲ୍ଡଘାଟରେ ବୁଢ଼ାବଳଙ୍ଗ ନଦୀକୁ ଗୃହ ପାର ହେବାକୁ ହୁଏ । ଏହା ବାଲେଶ୍ୱର ଯିବାର ପ୍ରବେଶଦ୍ୱାର; ତେଣୁ ଏଠାରେ ମରହଟ୍ଟାମାନଙ୍କର ଗୋଟିଏ ସୁଦୃଢ଼ ସେନାନିବାସ ଅଛି । ରାଜଘାଟଠାରେ ସୁବର୍ଣ୍ଣରେଖା ପାର ହୋଇଥିଲି । ସେଠାରୁ ଏପର୍ଯ୍ୟନ୍ତ ଆଦ୍ୟପ୍ରାନ୍ତ ସମେତ ବାରଟି ଚୌକି ଅଛି । ପ୍ରତ୍ୟେକ ଚୌକିରେ ଜଗନ୍ନାଥ ମନ୍ଦିର-ଦର୍ଶନାର୍ଥୀ ତୀର୍ଥଯାତ୍ରୀମାନଙ୍କଠାରୁ ଯଥାସମ୍ଭବ ଅର୍ଥ ବଳପୂର୍ବକ ଗୃହୀତ ହେଉଥିଲା ।

ଏକ ସମୟରେ **ପିପିଲି** ଏ ଅଞ୍ଚଳରେ ପ୍ରଧାନ ବନ୍ଦର ଥିଲା, ମାତ୍ର ନଦୀମୁହଁରେ ପ୍ରକାଣ୍ଡ ଚଡ଼ା ପଡ଼ିବାରୁ ବ୍ୟବସାୟୀମାନେ ଓଡ଼ିଶାର ତତ୍‌କାଳୀନ ନବାବ **ସୁଜା ଖାଁ**ଙ୍କ କର୍ତ୍ତୃକ ଉତ୍ସାହିତ ହୋଇ ବାଲେଶ୍ୱରଠାକୁ ଉଠି ଆସିଲେ ।

**ବାଲେଶ୍ୱର** ଗୋଟିଏ ବୃହତ୍ ସହର ଥିଲା ; ମାତ୍ର ବର୍ତ୍ତମାନ ଏହାର ଦୈର୍ଘ୍ୟ ଏକ ମାଇଲ, ପ୍ରସ୍ଥ ଅଧ ମାଇଲ । ଏହା ବୁଢାବଳଙ୍ଗ ନଦୀକୂଳରେ ଅବସ୍ଥିତ । ଏ ନଦୀରେ ଆଠଫୁଟ ଜୁଆର ଉଠେ । ଏଣୁ ଜାହାଜ ସବୁ ନିରାପଦରେ ଡକ୍ ପର୍ଯ୍ୟନ୍ତ ଆସିଥାଏ । ଅନେକ ଜାହାଜ ଏଠାରେ ଥାଏ । ବଡ଼ ଜୁଆର (Spring tide) ପାଣି ଅନେକ ଉପରକୁ ଉଠେ । ୨୦୦ ଟନ ବୋଝାଇ ଜାହାଜ ଏ ନଦୀରେ ଯାଇଆସି ପାରେ, ମାତ୍ର ନଦୀମୁହାଣର ଚଡ଼ାରେ କେବଳ ବଡ଼ ଜୁଆର ବେଳେ ଏହା ସମ୍ଭବ ହୋଇଥାଏ ।

ଇଂରେଜମାନଙ୍କ କୋଠି ଗୋଟିଏ ପ୍ରକାଣ୍ଡ ଘର । ବାହାରେ ଦେଖିବାକୁ ଯେପରି, ଭିତରେ ମଧ୍ୟ ସେହିପରି, ବଧିବନ୍ଧ ଭାବରେ ନିର୍ମିତ ନୁହେଁ । ଘରଟି ଏତେ ଖରାପ ଭାବରେ ନିର୍ମିତ ହୋଇଥିଲେ ମଧ୍ୟ ଏତେ ବଡ଼ ହେଉଛି ଅନେକ ଭଲ କୋଠରୀ ଅଛି । ଏହାର ଛାତ ଉପରେ ଠିଆ ହେଲେ ବଡ଼ ରମଣୀୟ ଦୃଶ୍ୟ ନୟନଗୋଚର ହୁଏ ।

ଦକ୍ଷିଣ-ପଶ୍ଚିମରେ ପଶ୍ଚିମ ଓ ଉତ୍ତର-ପଶ୍ଚିମର ଉତ୍ତର ଦିଗରେ ବାର ମାଇଲ ପ୍ରସାରିତ ଓ ନୀଳଗିରି ପାହାଡ଼ଦ୍ୱାରା ପରିବେଷ୍ଟିତ ପ୍ରାନ୍ତର ବିଦ୍ୟମାନ। ଦକ୍ଷିଣରେ ଏକ ସୁନ୍ଦର ସହର। ଛପରଘର ଅପେକ୍ଷା ଏତେ ଅଧିକ ପକା ଘର ଅନ୍ୟତ୍ର ଦେଖି ନ ଥିଲି। ପୂର୍ବ ଦିଗରେ ବୁଢ଼ାବଳଙ୍ଗ ବକ୍ର-ଗତିରେ ପ୍ରାନ୍ତର ମଧ୍ୟରେ ପ୍ରବାହିତ। ପ୍ରାନ୍ତରର ଚତୁର୍ଦ୍ଦିଗରେ ବହୁ ଗ୍ରାମ, ତତ୍ପରେ ସମୁଦ୍ର। ଉତ୍ତର ଦିଗରେ ପତିତ କ୍ଷେତ୍ର, ତାହା ପୂର୍ବୋକ୍ତ ନଦୀର ବନ୍ୟାଜଳରେ ପ୍ଲାବିତ ହୁଏ। ଏକ ଦିଗରେ ନୀଳ ପର୍ବତ ସହିତ ଅପର ଦିଗରେ ଦିଗନ୍ତବ୍ୟାପୀ ଶ୍ୟାମଳ ପ୍ରାନ୍ତର ଓ ଏକ ଦିଗରେ ସୁନ୍ଦର ଜନପୂର୍ଣ୍ଣ ନଗର ସହିତ ଅନ୍ୟ ଦିଗରେ ବହୁଦୂରବ୍ୟାପୀ ପତିତ କ୍ଷେତ୍ର, ପୁଣି ଏକ ଦିଗରେ ନୌଯାନର ଦୃଶ୍ୟରୁ ଶିଳ୍ପ-ବ୍ୟବସାୟାଦିର ଚର୍ଚ୍ଚାଜ୍ଞାପକ କଳ୍ପନା ସହିତ ଅପର ଦିଗରେ ଜଳସେଚନଯୋଗ୍ୟ ପତିତ କ୍ଷେତ୍ରର ଦୃଶ୍ୟରୁ ଆଳସ୍ୟସୂଚକ କଳ୍ପନାର ଉଦ୍ରେକ, ଏହି ସମସ୍ତର ସମାବେଶ ମନକୁ ଏକାବେଳକେ ମୁଗ୍ଧ କରିଦିଏ।

ପୁରୁଣା ବାଲେଶ୍ୱରରେ ଫରାସୀମାନଙ୍କର କୋଠି ଅଛି। ଏହା ଗୋଟିଏ କ୍ଷୁଦ୍ର ଗ୍ରାମ, ନୂତନ ସହରଠାରୁ ୩ ମାଇଲ ଦୂର। ଇଂରେଜ କୋଠିର ଅନତିଦୂରରେ ଦିନାମାର କୋଠି ଅବସ୍ଥିତ। ଏହି ଦୁଇଟି କୋଠିର ଅନ୍ତସ୍ଥଳରେ ଦୁଇଜଣ ଦିନାମାର ମହିଳାଙ୍କର ସ୍ମୃତିରକ୍ଷାର୍ଥ ଦୁଇଟି ଉଚ୍ଚ ପିରାମିଡ୍ ଅଛି। ପୋର୍ତ୍ତୁଗିଜମାନଙ୍କର ମଧ୍ୟ ଗୋଟିଏ ଭଜନାଳୟ (Church) ଅଛି। ଅତି ଅଳ୍ପ ସଂଖ୍ୟକ ପୋର୍ତ୍ତୁଗିଜ ଓ ଆର୍‌ମେନିଆନ ଏଠାରେ ଥାଆନ୍ତି।

ବାଲେଶ୍ୱରରେ ସାଧାରଣତଃ ୩୦ ଅଶ୍ୱାରୋହୀ ଓ ୬୦୦ ପଦାତି ଦ୍ୱାରା ଗଠିତ ଗୋଟିଏ ସୈନ୍ୟଦଳ ଥାଏ। ମାତ୍ର ଏ ସମୟରେ ସେମାନେ ପିଟେଲ୍‌ଜିଙ୍କ ସହିତ ମୟୂରଭଞ୍ଜ ରାଜ୍ୟରୁ କର ସଂଗ୍ରହରେ ନିୟୋଜିତ ଥିଲେ।

ମୟୂରଭଞ୍ଜ ରାଜ୍ୟ ମାଲଗିରି ପର୍ବତମାଳାଠାରୁ ଆରମ୍ଭ କରି ସମୁଦ୍ର ପର୍ଯ୍ୟନ୍ତ ବିସ୍ତୃତ । କିନ୍ତୁ ବିଜାତୀୟ ଶାସନତନ୍ତ୍ରରେ ଅସନ୍ତୋଷ ଓ ଅସହିଷ୍ଣୁତା ପ୍ରକାଶ ହେତୁ ପ୍ରଥମର ରାଜ୍ୟର ଅଂଶବିଶେଷ ଦଣ୍ଡସ୍ୱରୂପ ରାଜ୍ୟରୁ ବିଚ୍ଛିନ୍ନ କରାଯାଇଥିଲା । ସ୍ୱାଧୀନତାପ୍ରୟାସୀ ରାଜାମାନଙ୍କ ବିରୋଧରେ ଯେଉଁ କର୍ମଚାରୀମାନେ (officers) ଦକ୍ଷତା ସହକାରେ ଯୁଦ୍ଧ କରୁଥିଲେ, ସେମାନଙ୍କୁ ରାଜ୍ୟାଂଶ ପୁରସ୍କାର ଦିଆଯାଇଥିଲା । ଏହିପରି ପୁରସ୍କାରଦତ୍ତ ରାଜ୍ୟଖଣ୍ଡମାନ **ତାଲୁକ** ନାମରେ କଥିତ ହେଉଥିଲା । ଏହି ହେତୁରୁ ଏ ଅଞ୍ଚଳରେ ଏତେ କ୍ଷୁଦ୍ର କ୍ଷୁଦ୍ର **ତାଲୁକଦାର** ଅଛନ୍ତି । ଏମାନେ ମରହଟ୍ଟାମାନଙ୍କଦ୍ୱାରା ଅତ୍ୟାଚାରିତ ହୋଇ ରୟତମାନଙ୍କ ଉପରେ ଅତ୍ୟାଚାର କରିବାରୁ ଦେଶ ଏକାବେଳକେ ଉତ୍ସନ୍ନ ହୋଇ ଜନଶୂନ୍ୟ ହୋଇଅଛି । ଏହା ସୁନିଶ୍ଚିତ ଯେ, ବଡ଼ ଜମିଦାର ଅଧୀନସ୍ଥ ପ୍ରଜାମାନଙ୍କ ଅପେକ୍ଷା ପୂର୍ବୋକ୍ତ ତାଲୁକଦାରମାନଙ୍କ ଅଧୀନସ୍ଥ ପ୍ରଜାଙ୍କର ଅବସ୍ଥା ଅତି ଶୋଚନୀୟ । ଏହାର କାରଣ ମୁଁ ତଳେ ବର୍ଣ୍ଣନା କରୁଅଛି ।

ଯେତେବେଳେ କୌଣସି ବ୍ୟକ୍ତି ସୈନିକ କର୍ମ ବା ଅର୍ଥବଳରେ ବଡ଼ ହୁଏ, ଦେଶବାସୀ ହୋଇଥିଲେ, ସେ ଆପଣାର ଗ୍ରାମ ଓ ତତ୍‌ସନ୍ନିହିତ ଦୁଇ ଚାରୋଟି ଗ୍ରାମ ଆପଣାର ଅଧିକାରଭୁକ୍ତ କରି ପର୍ବପର୍ବାଣିରେ ସନ୍ତୁଷ୍ଟମନ୍ ଆମୋଦପ୍ରମୋଦରେ କଟାଇବାକୁ ଇଚ୍ଛୁକ ହୁଏ; ଅଉ ବିଦେଶୀ ହୋଇଥିଲେ, ସେ କାଳକ୍ରମେ ଭାଗ୍ୟ ପରିବର୍ତ୍ତନ ହେଲେ କିପରି ନିଜେ ସୁଖରେ ରହି ପାରିବ, ତଦୁଦ୍ଦେଶ୍ୟରେ ଖଣ୍ଡିଏ ଜମିଦାରୀ କରିବାକୁ ଅଭିଳାଷୀ ହୋଇଥାଏ । ସେ ଅନ୍ୟ ଜମିଦାରଠାରୁ ଜମିଦାରୀ କ୍ରୟ କରେ ଅଥବା ରାଜାଙ୍କଠାରୁ ୫।୬ଟି ଗ୍ରାମ ଉଚିତ କର ଖଜଣା ଅପେକ୍ଷା ଅଳ୍ପ ହାରରେ ପଟ୍ଟା ଆଣେ ଏବଂ ତାହାର ଉନ୍ନତି ବିଧାନ କରି ତହିଁରେ କରବୃଦ୍ଧି କରାଏ । ସେ ଦେହତ୍ୟାଗ କଲେ ପୈତୃକ କର୍ମରେ ଅଯୋଗ୍ୟ ତାହାର ଜ୍ୟେଷ୍ଠପୁତ୍ର କ୍ୱଚିତ ପିତୃପଦରେ ନିଯୁକ୍ତ ହୋଇଥାଏ ଓ ତାକୁ

ବୃହତ୍ ସଂସାରର ଭରଣପୋଷଣ ନିମନ୍ତେ ପୈତୃକ ତାଲୁକ ଉପରେ ନିର୍ଭର କରିବାକୁ ହୁଏ । ପୈତୃକ ଆୟ ହରାଇ ମଧ୍ୟ ଯୁବକ-ପୁତ୍ର ପୈତୃକ ବ୍ୟୟ ସଂକୋଚ କରିବାକୁ କୁଣ୍ଠିତ ହୋଇ ଋଣଜାଲରେ ଜଡ଼ିତ ହୁଏ ଓ ଋଣ ପରିଶୋଧ ନିମନ୍ତେ କରବୃଦ୍ଧି କରି ପ୍ରଜାପୀଡ଼କମାନଙ୍କୁ ହାଇଗ୍ରଣ କରେ । ତେଣୁ ପ୍ରଜାମାନେ ତାଲୁକ ଛାଡ଼ି ପଳାଇଯାଆନ୍ତି । ଋଣଭାର ଯେଉଁ ପରିମାଣରେ ବଢ଼ିଥାଏ, ଠିକ ସେହି ପରିମାଣରେ ଆୟ ମଧ୍ୟ ଊଣା ହେଉଥାଏ । ଏହିପରି ସମୟରେ କେହି ଛଦ୍ମବେଶୀ ପ୍ରଜାପୀଡ଼କ ଲୋକ ତାହାର ତାଲୁକରେ ନାଏବ ରହେ । ଏହି ପ୍ରକାରେ ତାଲୁକ-ଦାର ଅତଶୟ ଦାନଦରିଦ୍ର ଓ ଋଣଗ୍ରସ୍ତ ହୋଇ ଅଧଃପତିତ ହୁଏ, ଖାଇବାକୁ ମୁଠାଏ ଚାଉଳ ପାଏ ନାହିଁ, ଭଗ୍ନୋମୁଖ ଓ ଅସ୍ୱାସ୍ଥ୍ୟକର ଗଡ଼ରେ ବଂଶମର୍ଯ୍ୟାଦାର ଗର୍ବରେ ଛାତି ଫୁଲେଇ ବନ୍ଧୁବାନ୍ଧବଶୂନ୍ୟ ହୋଇ ଦିନ କଟାଏ । ଏପରି ଦୁରବସ୍ଥାରେ ନିଜର ଚିତ୍ତବିନୋଦନ ନିମନ୍ତେ ଅହିଂସ ନିଶାର ଆଶ୍ରୟ କରେ । ଏମାନେ କି ସାମନ୍ତ ରାଜତନ୍ତ୍ର ଯୁଗର ଦାନବ ନୁହନ୍ତି ? ଯଦି କାହାରି ପୁତ୍ର ରାଜକବଳରୁ ପୈତୃକ ସମ୍ପତ୍ତି ରକ୍ଷା କରିବାକୁ ସମର୍ଥ ହୁଏ, ତେବେ ସେ ବଂଶ ସେହି ପୁରୁଷରେ ଉତ୍ସନ୍ନ ନ ଯାଇ ରହିଯାଏ । ସେତେବେଳେ ଶାସକ ରାଜାମାନେ ମୃତ କର୍ମ-ଚାରୀଙ୍କର ସମସ୍ତ ସ୍ୱୋପାର୍ଜିତ ସମ୍ପତ୍ତି ହରଣ କରୁଥିଲେ । ମାତ୍ର ଯଦି ବଂଶଧର ପୈତୃକ ଭୂମି ତ୍ୟାଗ କରିବାର ଅନଭିଳାଷୀ ହୁଏ ବା ରାଜ-ଧାନୀରେ କର୍ମ-ଅନ୍ୱେଷଣର ପ୍ରୟାସ କରେ ଅଥବା ବିବେକ ଓ ତ୍ୟାଗ-ବଳରେ ଜମିବାଡ଼ିର ଉନ୍ନତି ଓ ଅର୍ଜନ ପ୍ରତି ମନୋଯୋଗୀ ହୁଏ, ତେବେ ଦୁଇ ତିନି ପୁରୁଷ ପର୍ଯ୍ୟନ୍ତ ସେହି ବଂଶର ସର୍ବନାଶ ହୁଏ ନାହିଁ ।

ମାତ୍ର ଏ ଅପ୍ରାସଙ୍ଗିକ କଥାର ପ୍ରୟୋଜନ ନାହିଁ । ସର୍ବାପେକ୍ଷା ବଡ଼ ପିପିଲି ପରଗଣାଟି ମୟୁରଭଞ୍ଜ ରାଜ୍ୟରୁ ସର୍ବପ୍ରଥମ ବିଚ୍ଛିନ୍ନ ହୋଇଥିଲା । ତତ୍ପରେ ବାଲେଶ୍ୱର ବିଚ୍ଛିନ୍ନ ହେଲା । ତତ୍ପରେ ଏତେ କ୍ଷୁଦ୍ର କ୍ଷୁଦ୍ର ତାଲୁକ ମୟୁରଭଞ୍ଜରୁ ବାହାର କରି ନିଆଗଲା ଯେ, ମୁଁ ଯେଉଁ ରାସ୍ତାରେ ଆସିଲି, ତାହାର ପୂର୍ବପ୍ରାନ୍ତରେ ରାଜାଙ୍କର ଆଉ ରାଜ୍ୟ ନାହିଁ ।

ଏହି ସମୟରେ ମୟୁରଭଞ୍ଜରେ ବା ମୟୁରବନରେ ଦୁଇଜଣ ରାଜା ଥିଲେ । ଶାସନକର୍ତ୍ତା ରାଜା **ଦାମୋଦର ଭଞ୍ଜ** ନିଜ ପିତୃବ୍ୟ **ଦାଶରଥି ଭଞ୍ଜ**ଙ୍କୁ କେତେକ ମହାଲରୁ ଅଧିକାରଚ୍ୟୁତ କରିବାରୁ ସେ ନୀଳଗିରି ଚାଲିଗଲେ ଓ ରାଜାଙ୍କ ପ୍ରତି ଅସନ୍ତୁଷ୍ଟ ପ୍ରଧାନ ସେନାପତି **ଜିହାନ ମହମ୍ମଦ** ମଧ୍ୟ ତାଙ୍କ ସହିତ ଯୋଗ ଦେଲେ । ଏ ଉଭୟେ ଓଡ଼ିଶାର ଗଭର୍ଣ୍ଣର **ଭବାନୀପଣ୍ଡିତ**ଙ୍କ ସମୀପକୁ ଯାଇ କହିଲେ ଯେ, ଯଦି ସେ ଖୁଡ଼ୁତାଙ୍କୁ (ଦାଶରଥି ଭଞ୍ଜ) ରାଜ୍ୟରେ ରାଜା କରାଇବାର ପ୍ରସ୍ତାବରେ ସମ୍ମତ, ତେବେ ସେମାନେ ବହୁ ଅର୍ଥ ପ୍ରଦାନ କରିବେ ଓ ସୈନ୍ୟମାନଙ୍କୁ ବାଟ ଦେଖାଇ ନେଇଯିବେ । ଭବାନୀ ସୈନ୍ୟ ପଠାଇ ଉପର୍ଯ୍ୟପରି ତିନି ଥର **ମାନଗୋବିନ୍ଦପୁର, ମାଣବୀ ଓ ଭୀମଦା** ଆକ୍ରମଣ କଲେ । ଏହି ତିନି ସ୍ଥାନର ଗଡ଼ଗୁଡ଼ିକରେ ଯେଉଁ ସୈନ୍ୟମାନେ ଥିଲେ, ସେମାନଙ୍କୁ ଜିହାନ ମହମ୍ମଦ କରଗତ କରିଥିବାରୁ ସେମାନେ ବିନା ଯୁଦ୍ଧରେ ଆତ୍ମସମର୍ପଣ କଲେ । ଦାମୋଦର ଭଞ୍ଜ ଏହି ସବୁ ଗଡ଼ଗୁଡ଼ିକୁ ସାହାଯ୍ୟ ପଠାଇବା ପାଇଁ ତତ୍ପର ଥିଲେ, ମାତ୍ର କାଳେ ବିଶ୍ୱାସଘାତକତା-ବଶତଃ ଶତ୍ରୁହସ୍ତରେ ପତିତ ହେବେ, ଏହି ଭୟରେ ପର୍ବତାକୀର୍ଣ୍ଣ ବ୍ରାହ୍ମଣଘାଟିର ଘାଟି ଭିତରକୁ ପଳାଇଲେ ଓ ରାଜଧାନୀ **ହରିହରପୁର** ଓ ସମତଳ ଭୂମି ପ୍ରତିଦ୍ୱନ୍ଦୀମାନଙ୍କର ଅଧିକାରଭୁକ୍ତ ହେଲା ।

ଏପ୍ରିଲ ମାସ ୨୭ ତାରିଖରେ ବାଲେଶ୍ୱରରୁ ବାହାରି **ଏକ୍ତିଆରପୁର*** (Ectiurpoor) ନିକଟବର୍ତ୍ତୀ ଗୋଟିଏ ବଟବୃକ୍ଷ ମୂଳରେ ବିଶ୍ରାମ ନେଲି । ମୁଁ ଏହିଠାରେ ପ୍ରଥମେ **ନୀଲଗିରି** (Neelgur—ନୀଳଗଡ଼ [୧]) ରାଜ୍ୟରେ

*ଅଧୁନିକ ଅଗରପୁର । ପୂର୍ବେ ଏଠାରେ ତୀର୍ଥଯାତ୍ରୀମାନଙ୍କଠାରୁ ନୀଳଗିରି ରାଜାଙ୍କ ଦ୍ୱାରା କର ଗୃହୀତ ହେଉଥିଲା ।

୧ । "ପରଦିନ ପ୍ରାତଃକାଳେ ନୀଳଗଡ଼େ ଯାଇ,
ନୀଳଗଡ଼େ ଗିରୀ ନାମେ ମାଡିଲ ନମାଇ ।"

(ଗୋବିନ୍ଦ ଦାସେର କଡ଼ଚା)

ପଦାର୍ପଣ କଲି । ଜାଲଗିରି ପୂର୍ବେ ମୟୂରଭଞ୍ଜର ଅଧୀନ ଥିଲା[୧] । ଜାଲଗିରିର ଉତ୍ତରରେ ମୟୂରଭଞ୍ଜ, ପୂର୍ବରେ କେତେଗୁଡ଼ିଏ କ୍ଷୁଦ୍ର ତାଲୁକ, ଦକ୍ଷିଣ ଓ ପଶ୍ଚିମରେ **କେଉଁଝର** (Coonjur) । ମେଦନୀପୁରର ପଶ୍ଚିମବାହୀ ପର୍ବତମାଳା ଜାଲଗଡ଼ ନାମରେ କଥିତ ହୁଏ । ପ୍ରେମିକାର ନାମାନୁସାରେ କେହି କେହି ଇଂରେଜ ଏହାକୁ ଇଂରାଜୀରେ ରୂପାନ୍ତରିତ କରି 'ନେଲି ଗ୍ରିନ୍' (Nelly Green) ପାହାଡ଼ ବୋଲି ନାମ ଦେଇ-ଅଛନ୍ତି । ବଙ୍ଗଦେଶକୁ ସମୁଦ୍ରଯାତ୍ରାର ଡାଇରେକ୍ଟରୀ ପୁସ୍ତକରେ ସେମାନଙ୍କ ନାମର ଉଲ୍ଲେଖ ଅଛି । ଅଧିକାଂଶ ଭୂଗୋଳପ୍ରଣେତାଙ୍କର ସ୍ଥାନର ନାମକରଣ ଅପେକ୍ଷା ଏହି ନାମକରଣରେ ଅଧିକ ଶବ୍ଦଗଠନତତ୍ତ୍ୱ ନିହିତ ଅଛି । ମୋର ମତ ଏହି ଯେ, ଦେଶର ପ୍ରାୟ ସମସ୍ତ ସ୍ଥାନବାଚକ ଶବ୍ଦଗୁଡ଼ିକ ପ୍ରତିଷ୍ଠାତାର ନାମ ସହିତ ଦୁର୍ଗସ୍ଥଳରେ ଗଡ଼ ବା ନଗର, ସହର ସ୍ଥଳରେ ଆବାଦ, ଗ୍ରାମ ସ୍ଥଳରେ ପୁର ବା ଗଞ୍ଜ ଯୁକ୍ତ ହୋଇ କଥିତ ହୁଏ; ଏଣୁ ହିନ୍ଦୁମାନଙ୍କ ମଧ୍ୟରେ 'ଜାଲ' ନାମର ଅତ୍ୟଧିକ ପ୍ରଚଳନ ହେତୁରୁ ମୁଁ ଏହାକୁ ଜାଲଗଡ଼ ଆଖ୍ୟା ଦେଉଅଛି । ଏହା ଗୋଟିଏ କ୍ଷୁଦ୍ର ରାଜ୍ୟ ଏବଂ ମୟୂରଭଞ୍ଜର ପ୍ରଭୁତ୍ୱରୁ ନିଜକୁ ରକ୍ଷା କରିବା ନିମିତ୍ତ ଏଠାର ରାଜା ମରହଟ୍ଟାମାନଙ୍କୁ ଟ୩୦,୦୦୦୯ ବାର୍ଷିକ କର ଦିଅନ୍ତି ।

ଏହି ଚଟିର ବ୍ୟବଧାନ ଅତି ଅଳ୍ପ, ମାତ୍ର ଆଠ ମାଇଲ ଦୂର । ଦେଶାଗ୍ରର ମାନ ବାଲେଶ୍ୱରରୁ କେତେଜଣ ନୂତନ ଭୃତ୍ୟ ସଂଗ୍ରହ କରିଥିଲି । ପ୍ରାଚ୍ୟ ପ୍ରଥା ଅନୁମୋଦନ କରି ପ୍ରଥମ ଦିନର ଯାତ୍ରା ଅଳ୍ପଦୂର ପର୍ଯ୍ୟନ୍ତ କରିଥିଲି ।

ସୋରୋ ଓ ବାଲେଶ୍ୱର ମଧ୍ୟବର୍ତ୍ତୀ ସ୍ଥାନରେ କୌଣସି ବଡ଼ ଗ୍ରାମ ନାହିଁ । ଏହି ଅସୁବିଧା ନିରାକରଣ ନିମିତ୍ତ ସୋରୋର ପୂର୍ବତନ ଫଉଜଦାର **ମହମ୍ମଦ**

---

୧ । ଜାଲଗିରିର ହରିଚନ୍ଦନ ରାଜା ମୟୂରଭଞ୍ଜର ଜମିଦାର ଥିଲେ । ଷ୍ଟାର୍ଲିଂ ସାହେବଙ୍କ ଓଡ଼ିଶା ଓ ସାର ଯଦୁନାଥ ସରକାର କୃତ Studies in Moghal India.

**ଆଲିଗାଁ ବେଗୁନିଆରେ** ଗୋଟିଏ ବଜାର ବସାଇ, କୂଅ ଖୋଳାଇ, ଲୋକମାନଙ୍କୁ ବସବାସ କରି ରହିବା ନିମିତ୍ତ ଉତ୍ସାହିତ କରିଥିଲେ ; ମାତ୍ର ତାଙ୍କର ମୃତ୍ୟୁର ପିଡାରୁ ସାହାଯ୍ୟ ଅଭାବରେ ବଜାର ଭାଙ୍ଗିଗଲା ଅତ ମନ୍ଦ ରାଜ୍ୟଶାସନ ହେତୁରୁ ଅଧିକାଂଶ ଗ୍ରାମର ଏହିପରି ଦୁରବସ୍ଥା ଘଟିଅଛି । କେହି ମହାନୁଭବ ବ୍ୟକ୍ତି ଯଶ ଉପାର୍ଜନ ଓ ପଥିକମାନଙ୍କଠାରୁ ଆଶୀର୍ବାଦର କାମନା ପୋଷଣ କରି ପଥବର୍ତ୍ତୀ ସ୍ଥାନରେ ସରାଇଘର କରି ଦଅନ୍ତି । ମୃଦୁ ଜଳବାୟୁବିଶିଷ୍ଟ ଏ ପ୍ରଦେଶରେ ବୃକ୍ଷାଦିର ଛାୟା ଓ ସ୍ୱାସ୍ଥ୍ୟକର ଜଳ ଏକାନ୍ତ ଆବଶ୍ୟକ । ପ୍ରଥମ ଅଭାବ ମୋଚନ ପାଇଁ ସେମାନେ ଆମ୍ବଗଛର ବଗିଚା ଓ ଦ୍ୱିତୀୟ ଅଭାବ ମୋଚନ ପାଇଁ ପକ୍କା ଘାଟର ପୋଖରୀ ବା ପକ୍କା କୂଅ କରନ୍ତି । ଦୁଇଚାରିଜଣ ଲୋକ ଏଣୁ ତେଣୁ ଦଶ ପଦାର୍ଥର ଦୋକାନ ମେଲାଇ ଦିଅନ୍ତି; ସେମାନଙ୍କୁ ଆପଦ-ବିପଦରୁ ରକ୍ଷା କରିବା ପାଇଁ ସ୍ୱଳ୍ପସଂଖ୍ୟକ ପ୍ରହରୀର ମଧ୍ୟ ବ୍ୟବସ୍ଥା ହୁଏ । ଘର ଛାଡ଼ିଣି ନ ସରୁଣୁ ସେମାନେ ଭାତ ମୁଠାଏ ସୁଖରେ ଖାଇବା ପାଇଁ ବାଡ଼ି ଭିତରେ ପନିପରିବା ଦଶଗଛ ପୋତି ଦଅନ୍ତି ଓ ଦୈନିକ ଆହାର ନିମିତ୍ତ କିଛି ଧାନ ଚାଷ ମଧ୍ୟ କରନ୍ତି । ଏହିପରି ରହିବା ପରେ କୁଟୁମ୍ବ ଆଣି ଘର କରି ରହନ୍ତି । ଘରଣୀ କିଛି ଚାଉଳ ପାଣିରେ ପକାଇ ରାତିରୁ ରଖିଥାଏ, ସୂର୍ଯ୍ୟୋଦୟ ହେବାର ଘଡ଼ିକ ଆଗରୁ ଉଠି ଚାଉଳକୁ ଶିଳରେ ବାଟି ପିଠା କରେ । ଶିଳପାରେ ବାଟୁ ବାଟୁ ସେ ଯେଉଁ ଗୀତ ଗାଉଥାଏ, ତାହାର ମାଧୁରୀ ସକାଳର ଦୀପ୍ତି ସହିତ ମିଶ୍ରିତ ହୋଇ ଅତି ପ୍ରୀତିକର ହୁଏ । ବଜାର ଭିତରେ ଯାଉଁ ଯାଉଁ ସେହି ଗୀତ ଶୁଣିଲାକ୍ଷଣି ମୋର ମନ ବିମଳ ଆନନ୍ଦରେ ପୂର୍ଣ୍ଣ ହୋଇଯାଏ । ତତ୍ପରେ ସେ ଚଣାକୁ ଚୁଲିରେ ପକାଇ ପାଗ ଧରେ ଓ ବିକିବା ପାଇଁ ଦୋକାନରେ ସଜାଇ ରଖେ । ଚାଉଳ ଓ ଚଣାରୁ ପୂର୍ବୋକ୍ତ ପ୍ରକାରରେ ପ୍ରସ୍ତୁତ ଜିନିଷରେ ବାଟୋଇମାନଙ୍କର ସକାଳଖିଆ (Breakfast) ଚଳେ । ପୁଷ୍ଟିପୋଷକ ବିପଦାପନ୍ନ ନ ହେବାଯାଏ ଅଧିବାସୀମାନେ ଏହିପରି ସୁଖରେ କାଳଯାପନ କରନ୍ତି । ଯଦି ଗ୍ରାମରେ ସେହିପରି କେହି ନୂତନ ଯୋଗ୍ୟ

ଲୋକ ନ ଥାଏ, ତେବେ ସେମାନେ ସେ ସ୍ଥାନ ପରିତ୍ୟାଗ କରନ୍ତି। ସେମାନଙ୍କର ଅସ୍ତିତ୍ୱ ଅବଲମ୍ୱେ ଲୁପ୍ତ ହୁଏ। କେବଳ ଅଲକ୍ଷି ସୂଧାଣ୍ଡି ବୃକ୍ଷରୁ The sad historian of the pensive plain (ବିଜନ-ପ୍ରାନ୍ତର-ବ୍ୟଥିତ-କଥକ) ବ୍ୟତୀତ ଆଉ କେହି ସେଠାରେ ରହନ୍ତି ନାହିଁ। ମାତ୍ର ଯଦି ପୃଷ୍ଠପୋଷକର କ୍ଷମତା ସ୍ଥାୟୀ ହୁଏ, ତେବେ ବ୍ୟବସାୟୀମାନେ ଆସି ବସତି କରନ୍ତି। ବାଣିଜ୍ୟର ଉନ୍ନତି ସେଠାରେ ହୋଇଥାଏ। ଅଧିବାସୀମାନେ ଧନାଢ଼୍ୟ ହୁଅନ୍ତି; ତାଙ୍କର ମୃତ୍ୟୁ ପରେ ସେମାନେ ଅର୍ଥ ବିନିମୟରେ ନୂତନ ପ୍ରଭୁ ନିର୍ବାଚନ କରନ୍ତି ବା ରାଜଦରବାରର ଆଶ୍ରୟପ୍ରାର୍ଥୀ ହୁଅନ୍ତି।

ଏଠାରେ କଣ ଆମ୍ଭେମାନେ ଯାବତୀୟ ଲୋକତନ୍ତ୍ର (Corporation) ର ମୂଳସୂତ୍ର ପାଉ ନାହିଁ? ଶିଳ୍ପୀସବୁ ଅତ୍ୟାଚାରୀ ସାମନ୍ତ ରାଜାର ଅତ୍ୟାଚାରରୁ ରକ୍ଷା ପାଇବା ନିମିତ୍ତ ଆପଣାକୁ ଅନ୍ୟର ଆଶ୍ରୟାଧୀନ କରନ୍ତି, ତାହାର ଆନୁକୂଲ୍ୟରେ ରହି ଅବଶେଷରେ ପ୍ରବଳ ଏକତା-ବଳରେ ରାଜା ବ୍ୟତୀତ ଅନ୍ୟ କାହାରି ଆଶ୍ରୟ ପ୍ରତି ଭ୍ରୂକ୍ଷେପ କରନ୍ତି ନାହିଁ।

ନଦୀକୂଳବର୍ତ୍ତୀ ଉତ୍ତର-ପୂର୍ବ ଦିଗର ଭଗ୍ନାବଶେଷରୁ ଏହା ପ୍ରତୀତ ହୁଏ ଯେ, ସୋନପୁର ଦିନେ ଗୋଟିଏ ଖୁବ୍ ବଡ଼ ବଜାର ଥିଲା। ବର୍ତ୍ତମାନ ସମସ୍ତ ବସତି ଦକ୍ଷିଣ-ପଶ୍ଚିମ ଦିଗରେ ବିଦ୍ୟମାନ। ମୋର ଭ୍ରମଣବୃତ୍ତାନ୍ତରେ ଏହା କହିବା ଅନୁଚିତ ଯେ, ମୁଁ ଯେଉଁଠାକୁ ଯାଇଥିଲି, ତାହା ଦିନେ ପ୍ରଭାବଶାଳୀ ସ୍ଥାନ ଥିଲା। କ୍ଷୁଦ୍ର ବା ବୃହତ୍ ସମସ୍ତ ସ୍ଥାନ ମରହଟ୍ଟା-ମାନଙ୍କ ଦ୍ୱାରା ବିଧ୍ୱସ୍ତ ହୋଇଥିଲା। କେବଳ ଯେଉଁଗୁଡ଼ିକ ଅତି ବୃହତ୍ ଥିଲା, ତାହାର ଧ୍ୱଂସ ହେବାକୁ ବିଳମ୍ବ ହୋଇଥିବାରୁ ସେଗୁଡ଼ିକର ଅସ୍ତିତ୍ୱ ଅଦ୍ୟାପି ରହିଅଛି। ସୋନପୁରରେ ଗୋଟିଏ ସୁନ୍ଦର ପଥର ପୋଲର ଭଗ୍ନାବଶେଷ ରହିଅଛି। ଏଠାରେ ମରହଟ୍ଟାମାନଙ୍କର ଗୋଟିଏ ସୈନ୍ୟନିବାସ ଅଛି। ସେଥିରେ ଏକଶତ ଅଶ୍ୱାରୋହୀ ଓ ତିନିଶତ

ପଦାତି ରହନ୍ତି । ଏହି ଏତିକ ସୈନ୍ୟବଳ କେବଳ ମାଲଗିରି ସକାଶେ ରକ୍ଷା ହୋଇଥାଏ ।

ବାଲେଶ୍ୱରଠାରୁ ସୋରୋର ଦୁଇ ମାଇଲ ଅଗ୍ରବର୍ତ୍ତୀ ସ୍ଥାନ ପର୍ଯ୍ୟନ୍ତ ସମସ୍ତ ପଥ ବର୍ଷାକାଳରେ ବିଶେଷ କର୍ଦ୍ଦମାକ୍ତ ହୁଏ । ସେଠାରୁ ଭଦ୍ରକ ପର୍ଯ୍ୟନ୍ତ କେବଳ ପ୍ରାନ୍ତର । ସେଠାରେ ସବୁ ଋତୁରେ ଯାତାୟାତ ଅତି ଅକ୍ଲେଶରେ ହୋଇଥାଏ । ଏହିପରି କ୍ଷେତ୍ର ଉପରେ ଶ୍ୱେତାଙ୍ଗ ସୈନ୍ୟବୃନ୍ଦ କୃଷ୍ଣାଙ୍ଗ ଶତ୍ରୁ ପାଇବାକୁ ଇଚ୍ଛୁକ ହୁଅନ୍ତି ।

୩୦ ତାରିଖ ଏପ୍ରିଲ । ୨୧ ତାରିଖ ଭୋର ସୋରୋ ଛାଡ଼ିଲୁ । ପାଞ୍ଚ ମାଇଲ ଯାଇ ପଥରପୋଲ ଉପରେ କାଁଶବାଁଶ ନଦୀ ପାର ହେଲୁ । ଏହି ପୋଲଟି ୧୨୦ ଗଜ ଲମ୍ବା ଓ ୧୦ ଗଜ ଚଉଡ଼ା । ଏଥିରେ ଦଶଟି ଖିଲାଣ ଅଛି । **ସୁଜା ଖାଁ** ଓଡ଼ିଶାରେ ନବାବ ଥିବା ସମୟରେ ମୁର୍ଶିଦାବାଦ ସଡ଼କରେ **କଟକ**ଠାରୁ **ନଣ୍ଡାଜଲ** ପର୍ଯ୍ୟନ୍ତ ଦେଶ ମଧ୍ୟରେ ଯେତେ କ୍ଷୁଦ୍ର ନଦୀ ଥିଲା, ସବୁଗୁଡ଼ିକ ଉପରେ ଏହିପରି ପୋଲ ନିର୍ମାଣ କରିଥିଲେ । ନଣ୍ଡାଜଲ* ବର୍ତ୍ତମାନ ବର୍ଦ୍ଧମାନ ଅନ୍ତର୍ଗତ । ଏହିପରି ପଥରନିର୍ମିତ ତିନୋଟି ପୋଲ ମେଦିନୀପୁର ନିକଟରେ ଅଛି; ମାତ୍ର ତାହାର ଖିଲାଣ ଓ ଖମ୍ବ ସମାନ ସମାନ ବ୍ୟବଧାନରେ ଥିବାରୁ ସେଥିରେ ଜଳ ବାହାରିବାର ବାଧା ପଡ଼େ । ଖିଲାଣଗୁଡ଼ିକ ଗଥିକ (Gothic) ଗଠନରୀତିରେ ପ୍ରସ୍ତୁତ ହୋଇଥିବାରୁ ମଝିରେ ଫାଟି ଯାଇଅଛି । ଏହି ତ୍ରୁଟି ସତ୍ତ୍ୱେ ଏ ପୋଲ-ଗୁଡ଼ିକ ସେହି ମହାନୁଭବ **ରାଜପୁତ୍ର**ଙ୍କର ଉଦାରତା ପ୍ରଚାର କରୁଅଛି । ତାଙ୍କ ଶ୍ୱଶୁର **ଜାଫର ଖାଁ**ଙ୍କର ସ୍ମୃତିରକ୍ଷାର୍ଥ ମୁର୍ଶିଦାବାଦର ସର୍ବଶ୍ରେଷ୍ଠ ମସ୍‌ଜିଦ୍ ଛଡ଼ା ସ୍ଥାପତ୍ୟକଳାର ଉତ୍କୃଷ୍ଟତାନିଦର୍ଶନ ମୁଁ ଅନ୍ୟତ୍ର ପାଇ ନାହିଁ ।

ଏହି ପୋଲ ପାର ହୋଇ **ଭଦ୍ରକ ତାଲୁକ**ରେ ପଦାର୍ପଣ କଲୁ । ଉତ୍କୃଷ୍ଟ ଭୂମିଖଣ୍ଡ ଉପରେ ମରହଟ୍ଟା ଆକ୍ରମଣର ଗଭୀର ଦାଗ ଦୃଷ୍ଟିଗୋଚର

* ଅଧୁନାତନ ମେଦିନୀପୁର ଜିଲ୍ଲାରେ ଅବସ୍ଥିତ ।

ହେଲ । ପୂର୍ବେ ଏ ଅଞ୍ଚଳରେ ବହୁଲୋକର ବସତି ଥିଲା । ମାତ୍ର ଏବେ ମନୁଷ ବା ଅନ୍ୟ ଗୃହପାଳିତ ପଶୁପଲର ଜଗୁଆଳ ଛଡ଼ା ଅନ୍ୟ କୌଣସି ମନୁଷ୍ୟର ଚିହ୍ନ ଦୃଷ୍ଟିଗୋଚର ହୁଏ ନାହିଁ ।

ଓଡ଼ିଶାର ଏହି ଅଞ୍ଚଳରୁ ଇଂରେଜମାନଙ୍କ ଦ୍ୱାରା ଅସଙ୍ଗତ ଭାବରେ କଥିତ 'ବାଲେଶ୍ୱର ବାହକ' ମାନେ ଯାଇଥାଆନ୍ତି । ଦେଶ ଜଙ୍ଗଲ ହେବାରୁ ଏମାନେ ଏପରି କରିଥିବାର ଅନୁମାନ କେତେକ ପରିମାଣରେ କରାଯାଇ ପାରେ । ସାତ ସହସ୍ର ବଳିଷ୍ଠ ଯୁବକ ପଦ୍ଧିବାର ଛାଡ଼ି ବଙ୍ଗ-ଦେଶରେ ଯାନବାହକ* କାର୍ଯ୍ୟରେ ନିଯୁକ୍ତ ଅଛନ୍ତି । ସ୍ୱଦେଶରେ ଏମାନେ ଏପରି କୁମାରଜୀବନର ଧର୍ମ ପ୍ରଚାର କଲେ ମଧ୍ୟ ଦେଶରେ ଭ୍ରାତାର ମୃତ୍ୟୁ ପରେ ଭ୍ରାତୃବନିତାଠାରେ ଅନ୍ୟ ଭ୍ରାତା ସନ୍ତାନ ଉତ୍ପାଦନ କରନ୍ତି ଓ ସ୍ୱାମୀର ଅବର୍ତ୍ତମାନରେ ମଧ୍ୟ ଅନେକ ବିବାହିତା ରମଣୀ ବନ୍ଧ୍ୟା ରହନ୍ତି ନାହିଁ । ଯେଉଁମାନେ ବଙ୍ଗଦେଶକୁ ଯାଆନ୍ତି, ତାଙ୍କ ଭିତରୁ ଖୁବ୍ କମ୍ ଲୋକ ସେଠାରେ ବସତି କରି ରହନ୍ତି । ସେମାନେ କିଛି ଅର୍ଥ ନେଇ ଗୃହକୁ ଫେରନ୍ତି । କଲିକତାର ବିଳାସିତା ଯୋଗୁଁ ହାତ ଦୁର୍ବଳ ହୋଇଥିବାରୁ ପଶୁପଲ ପଛରେ ବୁଲିବା ସୁଖକର ମଣି ଲଙ୍ଗଳ ଧରି ପରିଶ୍ରମ କରିବାକୁ କୁଣ୍ଠିତ ହୁଅନ୍ତି । ଯେଉଁ ଜମିକୁ ସେମାନେ ପଡ଼ିଆ ରଖି ଗୋରୁ ମଇଁଷି ଚରାନ୍ତି, ତାହା ଯଦି ଚାଷ ହେଉଥାନ୍ତା, ତେବେ ସେଥିରୁ ଉତ୍ପନ୍ନ ଫସଲରେ ୩୦ଟି ପରିବାର ସ୍ୱଚ୍ଛନ୍ଦରେ ପେଟ ପୋଷି ପାରନ୍ତେ ।

ପୃଥିବୀରେ ଶ୍ରେଷ୍ଠ ରାଜନୀତିଜ୍ଞମାନଙ୍କ ସଦୃଶ କଲିକତାର ବେହେରାମାନେ ସାଧାରଣତନ୍ତ୍ର (Commonwealth) ଗଠନ କରିଅଛନ୍ତି । Concordia res parvae crescent (ଏକତାଃ ଶ୍ରେୟସୀ ପୁଂସାଂ) ଏହି

*ଇଂରାଜୀରେ Chairmen ଅଛି । Oxford Dictionary ରେ ଅଛି :— "Sedan (Chair), 17th and 18th century vehicle seated for one and carried by two chairmen with pols" । ଏହାର ପାରସିକ ଶବ୍ଦ ତାମଜାନ ।

ନୀତିବାକ୍ୟ ମାନି ସେମାନେ କାର୍ଯ୍ୟ କରନ୍ତି । କେବଳ ଏକତାବଳରେ ସେମାନେ ହିନ୍ଦୁସ୍ଥାନ ବିଜେତାମାନଙ୍କ ଉପରେ ଆପଣାର ପ୍ରଭୁତ୍ୱ ପ୍ରକାଶ କରି ପାରିଅଛନ୍ତି । ସେମାନଙ୍କର ସଭ୍ୟପତି ଅଛି; ସେମାନେ ସଭା କରି ସ୍ୱସମ୍ପ୍ରଦାୟର ହିତସାଧନର ସମସ୍ତ କଥା ସ୍ଥିର କରନ୍ତି । ଗୋଟିଏ ପ୍ରସ୍ତାବ ସ୍ଥିର ହେଲେ ବେତ୍ରାଘାତ ବା କାରାବାସ କୌଣସି ପ୍ରକାର ପରାଭବ ସତ୍ତ୍ୱେ କେହି ତାହା ପାଳନ କରିବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ଯଦି କେହି କରେ, ସେ ପତିତ ରହେ । ବଙ୍ଗଦେଶର ଜଳବାୟୁ ସେମାନଙ୍କ ଉପରେ ଅଦ୍ଭୁତ କାର୍ଯ୍ୟ କରେ । କାରଣ ଦେଶରେ ସେମାନଙ୍କର ପ୍ରତିବେଶୀମାନଙ୍କ ଦ୍ୱାରା ସେମାନେ ଫସାର-ବାହାର ଚୋର ବୋଲି କଥିତ ହେଲେ ମଧ୍ୟ ବିଦେଶରେ ସେମାନେ ସକଳ ବିଷୟରେ ବିଶ୍ୱାସୀ ହୁଅନ୍ତି । ଏହା ସତ୍ୟ ଯେ, ସେମାନେ ଆପଣା ଆପଣା ବ୍ୟବସ୍ଥା ମାନି ଚଳନ୍ତି । ଏଣୁ ସେମାନଙ୍କୁ ଚୋରିରେ ଧରିବା ଏକାନ୍ତ ଅସମ୍ଭବ ହୁଏ । କାରଣ ପ୍ରଥମତଃ ଜଣେ ବେହେରା ଅନ୍ୟ ଉପରେ ଦୋଷାରୋପ ନ କରି ନିଜେ ଶତ-ସହସ୍ର ଶପଥ କରିଥାଏ; ଦ୍ୱିତୀୟତଃ ବିଧର୍ମୀର ସ୍ପର୍ଶରେ ଆସିଲେ ଜାତିଚ୍ୟୁତ ହେବାର ଛଳନାରେ ସେମାନେ ନିଜର ଜାତିବନ୍ଧୁ ବ୍ୟତୀତ ଅନ୍ୟ କାହାରିକୁ ଗୃହମଧ୍ୟକୁ ପ୍ରବେଶ କରାଇଦିଅନ୍ତି ନାହିଁ । ଏହା ସଚରାଚର ବିଦିତ ଯେ, ଜଣେ ସାହେବ ବ୍ରାହ୍ମଣର ପାକଶାଳାକୁ ଯାଇ ପାରେ ଓ ସେଥିନିମିତ୍ତ ତାହାକୁ ଗୃହ ଧୌତ କରି ମନ୍ତ୍ରପାଠ ମାତ୍ର କରିବାକୁ ହୁଏ । ଏ ଦେଶର ଅସହ୍ୟ ଉତ୍ତାପ ଓ ଇଂରେଜମାନଙ୍କ ଆଳସ୍ୟହେତୁରୁ ସେମାନଙ୍କର ଏତେ ଅଧିକ ପ୍ରଭାବ ବଢ଼ିଅଛି । କାରଣ କେହି ଯଦି ଏହି ପ୍ରଭାବପୂର୍ଣ୍ଣ ସମାଜର ବିରାଗଭାଜନ ହୁଏ, ତେବେ ଭ୍ରମଣଜନିତ ପଥକ୍ଳାନ୍ତ ହେତୁରୁ ଜ୍ୱରାକ୍ରାନ୍ତ ହୋଇ ଶେଷରେ ସେ ମୃତ୍ୟୁମୁଖରେ ପତିତ ହୁଏ । ମୋତେ ବେଶ ଜଣା ଅଛି ଯେ, ସେମାନେ ଜଣେ ନିରୀହ ଲୋକକୁ ଭୃତ୍ୟମୁଖରେ ଅନବଧାନତାବଶତଃ ନିଷ୍ଠୀବନ ତ୍ୟାଗ କରିଥିବାରୁ ଜରିମାନା କରିଥିଲେ । ମାତ୍ର ଏହି ଦୋଷ ନିମିତ୍ତ ସେମାନେ ତାହାକୁ ସେହି ବ୍ୟକ୍ତିର ମୁଖ ଧୌତ କରିବା ସକାଶେ ବାଧ୍ୟ କରିଥିଲେ ଯଥେଷ୍ଟ

ହୋଇଥାନ୍ତି । କିନ୍ତୁ ସମାଜ ଏଥିରେ ଅପମାନିତ ହୁଏ ବୋଲି ପ୍ରତ୍ୟେକ ଲୋକକୁ ତାଙ୍କର ଆଦେଶ ପ୍ରତିପାଳନ କରିବାକୁ ପଡ଼େ । ନଚେତ୍ ତାହାର ବ୍ୟବସାୟରେ ବିଘ୍ନ ଘଟେ ଓ ସେ ନିଜେ ରୌଦ୍ରତାପରେ ଭଙ୍ଗ ହୋଇଥାଏ । ଏହିପରି କେତେ ଅସମ୍ଭବ କଥା କେବଳ ଏକତାବଳରେ ସେମାନେ ଗର୍ବିତ ଦ୍ୱୀପବାସୀମାନଙ୍କ ଦ୍ୱାରା କରାଇ ନଅନ୍ତି । ଯଦି ସେହି ଏକତା ଓ ଦୃଢ଼ତା ଦେଶରକ୍ଷା ନିମିତ୍ତ ଯୋଗ୍ୟତା ସହକାରେ ପ୍ରଯୁକ୍ତ ହୋଇଥାଆନ୍ତା, ତେବେ ସେମାନଙ୍କୁ ମରହଟ୍ଟାମାନେ କଦାପି ପରାଧୀନ କରି ପାରି ନ ଥାନ୍ତେ ।

କାଁଣବାଁଶ ନାଳଠାରୁ ୭ ମାଇଲ ଅନ୍ତରରେ ଗୋଟିଏ ପୋଖରୀ ଅଛି । ବର୍ତ୍ତମାନ ରାଜାଙ୍କର ପ୍ରମାତାମହୀଙ୍କ ନାମାନୁସାରେ ଲୋକେ ତାହାକୁ 'ରାଣୀ ପୋଖରୀ' କହନ୍ତି । ଏହି ପୁଣ୍ୟବତୀ ରମଣୀ ଜଗନ୍ନାଥ-ଧାମକୁ ତୀର୍ଥଯାତ୍ରା କରିବାବେଳେ ସୋରୋ ଓ ଭଦ୍ରଖ ମଧ୍ୟସ୍ଥଳରେ ନିଜର ଅନୁଚରମାନଙ୍କର ପାନୀୟଜଳପ୍ରାପ୍ତିର କଷ୍ଟ ଦର୍ଶନ କରି ସେଠାରୁ ପ୍ରତ୍ୟାବୃତ୍ତ ହୋଇ ଠିକ ମଧ୍ୟସ୍ଥଳରେ ଗୋଟିଏ ପୁଷ୍କରିଣୀ ଖନନ କରିବା ନିମିତ୍ତ ଅର୍ଥ ପ୍ରେରଣ କରିଥିଲେ । କର୍ମଚାରୀମାନେ ଗୋଟିଏ ପୁରାତନ ପୁଷ୍କରିଣୀର ପଙ୍କୋଦ୍ଧାର କରି ତାହାକୁ 'ରାଣୀ ପୋଖରୀ' ଆଖ୍ୟା ଦେଇ ପ୍ରେରିତ ଅର୍ଥର ଦ୍ୱିତୀୟାଂଶ ଉଦରସ୍ଥ କରିଥିଲେ ।

ସେ ଦିନ **ଭଦ୍ରଖ**ରେ ବିଶ୍ରାମ ନେଇ । ଏଠାରେ ଅଲ୍ପସଂଖ୍ୟକ ତନ୍ତୀ ଅଛନ୍ତି; ସେମାନେ ସୂକ୍ଷ୍ମ ମସଲିନ ବୁଣନ୍ତି । ଏହା ଅପେକ୍ଷା ଚୋର ଓ ତସ୍କର ନିମିତ୍ତ ଭଦ୍ରଖ ଆହୁରି ପ୍ରସିଦ୍ଧ । ଚୋରମାନଙ୍କର ସୁକୌଶଳ ଯାଦୁବିଦ୍ୟାର ପ୍ରଭାବ ସଦୃଶ ଅନୁମିତ ହୁଏ । ପଥଶ୍ରାନ୍ତ ଯାତ୍ରୀ ଆମ୍ବ ବଗିଚାରେ ଶୋଇଥାଏ, ଉଠି ଦେଖେ ଯେ, ତାହାର ପିନ୍ଧିବା ଲୁଗାଖଣ୍ଡିକ କିଏ କାଢ଼ି ନେଇଅଛି । ଏହାର କାରଣ ସ୍ଥିର କରି ନ ପାରି ଦେବ-ମାୟା ବିଚାରି ସେ ସ୍ଥିର ରହେ । ସମସ୍ତେ ଜାଣନ୍ତି ଯେ, ଏ ଅଞ୍ଚଳର ଲୋକମାନେ ଏକପ୍ରକାର ମାଦକ ବ୍ୟବହାର କରନ୍ତି । ସେମାନେ ତାକୁ

ରୋଇଲ୍ଲ ଲୋକର ନାକରେ ଦଅନ୍ତି । ସେ ଜିନିଷର ଗୁଣ ଉଡ଼ି ନ ଯିବା ଯାଏ ସେହି ଲୋକ ସେହିପରି ଅଚେତନ ହୋଇ ପଡ଼ିଥାଏ ।

ଉଦ୍ୟନ୍ତ ସହରର ସୀମା ଓ ସାଲନ୍ଦୀ ନଦୀ ମଧ୍ୟରେ **ରାଜାରାମ ହରକରା**ର କବର ଅଛି । ଏ ଜଣେ ବଙ୍ଗନବାବଙ୍କର ଭୃତ୍ୟ ଥିଲା । **ସିରାଜଉଦ୍ଦୌଲା**ଙ୍କ ଦ୍ୱାରା କର୍ମଚ୍ୟୁତ ହୋଇ ୧୭୫୬ ଖ୍ରୀଷ୍ଟାବ୍ଦରେ କର୍ଣ୍ଣେଲ କ୍ଲାଇବ ବଙ୍ଗଦେଶରେ ଜାହାଜରୁ ଉତ୍ତରିବା ମାତ୍ରେ ତାଙ୍କ ସହିତ ମିଳିତ ହେଲା । ନଖଦର୍ପଣସ୍ୱରୂପ ଦେଶରେ ସମସ୍ତ କଥା ଜାଣିଥିବାରୁ ଇଂରେଜମାନଙ୍କର କର୍ମତତ୍ପରତାରେ ସେ ବିଶେଷ ସହାୟକ ହେଲା । ମାତ୍ର ପରବର୍ତ୍ତୀ ସରକାର ଦ୍ୱାରା ଅନାଦୃତ ହେବାରୁ ସେ ଅସନ୍ତୁଷ୍ଟ ହୋଇ ମରହଟ୍ଟାମାନଙ୍କ ସହିତ ପତ୍ର ଲେଖାଲେଖି କଲା ଏବଂ ସେହି କାରଣରୁ ପଳାଇବାକୁ ବାଧ୍ୟ ହୋଇ କଟକ ଆସୁ ଆସୁ ଏହିଠାରେ ପ୍ରାଣତ୍ୟାଗ କଲା ।

୯ ତାରିଖ ମେ । ପ୍ରତ୍ୟୁଷରୁ ଉଦ୍ୟନ୍ତ ଛାଡ଼ି ସାଲନ୍ଦୀ ନଦୀ ପାର ହେଲୁ । ସାଲନ୍ଦୀର ଓସାର ୩୦୦ ଗଜ । ଏହି ସମୟରେ ସେଥିରେ ଚଳି ପାଣି ଥିଲା । ଏଠାରୁ ଗୃରି ମାଇଲ ଯାଇ ୨୦।୨୫ ଗଜ ଓସାର ଆଉ ଗୋଟିଏ କ୍ଷୁଦ୍ର ନଦୀ ପାଇଲୁ । ଏହାର ପାଣି ଗଭୀର ଓ ସ୍ରୋତ ପ୍ରଖର ଥିବାରୁ ମୋତେ ଜିନିଷପତ୍ର ପାର କରିବା ପାଇଁ ଭେଳା ଯୋଗାଡ଼ କରିବାକୁ ପଡ଼ିଲା । ଏହାର ନାମ 'ଭୁଣ୍ଡାନାଲ'[୧] । ଏହା ଉପରେ ଗୋଟିଏ ଭଲ ପଥରପୋଲ ଥିଲା । ସ୍ରୋତରେ ତାହାର ଦୁଇମୁଣ୍ଡ ଭାଙ୍ଗି ଯାଇଅଛି ।

୨ ତାରିଖ ମେ । ଏହି ନାଳ ପାର ହୋଇ **ଧାମନଗର** ପରଗଣାରେ ପହଞ୍ଚିଲୁ । ଏଠାରୁ ଦୁଇ ମାଇଲ ଯାଇ ଗୋଟିଏ ବେମରାମତ ଅଥଚ ସୁଦୃଢ଼ ପଥରପୋଲ ଉପରେ ଆଉ ଗୋଟିଏ ନାଳ ପାର ହୋଇ ଧାମନଗର ବଜାରରେ ପହଞ୍ଚିଲୁ । ଏଠାରେ **ଫୁଟେରହୋଟେସନ**ର ଘର । ତାହାର

୧ । ଏହାର ଆଧୁନିକ ନାମ ବଇଁପାଲି ।

ପୂର୍ବପୁରୁଷମାନେ ପଠାଣ ରାଜାମାନଙ୍କଠାରୁ ପଥିକମାନଙ୍କୁ ସଦାବର୍ତ୍ତି ଦେବା ସର୍ତ୍ତରେ ବହୁତ ଭୂମି ଦାନ ପାଇଥିଲେ । ସେ ଜମିବାଡ଼ି ଭୋଗ କରେ, ମାତ୍ର ସର୍ତ୍ତ ପାଳନ କରେ ନାହିଁ । ପାଞ୍ଚ ମାଇଲ ପରେ **ଟେଗଂଟି** ଓ ତାହାର ଦୁଇ ମାଇଲ ପରେ **ବୈତରଣୀ** ପାର ହୋଇ **ଯାଜପୁର**ରେ ପହଞ୍ଚିଲୁ । ଏହି ଉତ୍କଟ ନଦୀ ସାଳନ୍ଦୀ ସହିତ ମିଳିତ ହେବା ପରେ ଗୋଟିଏ ପ୍ରକାଣ୍ଡ ନଦୀରେ ପରିଣତ ହୋଇ କନକା ଉପସାଗର* ଓ ସମୁଦ୍ର ସହିତ ମିଶିଅଛି ।

ଯାଜପୁରର ଧ୍ୱଂସାବଶେଷ ତାହାର ପ୍ରାଚୀନ ଗୌରବ ପ୍ରଚାର କରୁଅଛି । ଏହି ସ୍ଥାନର ସୌନ୍ଦର୍ଯ୍ୟମୟ ଅବସ୍ଥାନରୁ **ମହମ୍ମଦ ତକି ଖାଁ**ର ରୁଚି ଧରାପଡ଼େ । ରାଜପ୍ରାସାଦର ଭଗ୍ନାବଶେଷ ମଧ୍ୟରେ ରାଜପଥ ପ୍ରସାରିତ । ପ୍ରାସାଦର ସିଂହଦ୍ୱାର ଓ ମସଜିଦ୍ ଅକ୍ଷୁଣ୍ଣ ଅଛି । ଏହା ଭାରତୀୟ ଦେଶୀୟ ମସଜିଦ୍ ସ୍ଥାପତ୍ୟାନୁମୋଦିତ । ଚାରି କୋଣରେ ଚାରୋଟି ମିନାର ଥିବାରୁ ସେଗୁଡ଼ିକର ସୂକ୍ଷ୍ମ ଅସାମଞ୍ଜସ୍ୟ ପ୍ରତିଭାତ ହେଉ ନାହିଁ ଓ ଆଲୋକ ଚଳାଚଳର ସୁବିଧା ରଖି ଗଠିତ ହୋଇଥିବାରୁ ଏଗୁଡ଼ିକ ଯେପରି ସୁନ୍ଦର ଦେଖାଯାଉଅଛି, ତାହାର ଅଭାବରୁ ଗମ୍ବୁଜଗୁଡ଼ିକ ସେହିପରି ଜଘନ୍ୟ ଓ କୁତ୍ସିତ ହୋଇଅଛି । ମୋ ମତରେ ଶିଖରଶୂନ୍ୟ ଗମ୍ବୁଜଠାରୁ ଅସୁନ୍ଦର କାର୍ଯ୍ୟ ସ୍ଥାପତ୍ୟଜଗତରେ ଆଉ କିଛି ନାହିଁ । ଏହା କେବଳ ସମତଳ ଛାଦର ଭାର ବହନ କରିଥାଏ । କଲିକତାର ଅଟ୍ଟାଳିକାଗୁଡ଼ିକରେ ଏହି ଦୋଷ ଲକ୍ଷିତ ହୁଏ । ଏହି ମସଜିଦ ନଦୀକୂଳରେ ଅବସ୍ଥିତ । ଏହାର ବିପରୀତ କୂଳରେ ଯେଉଁ ଠାକୁରବାଡ଼ିଟି ଅଛି, ତାହା ମରାମତ ହେଉଥିବାରୁ ଭଲ ଅଛି । ମାତ୍ର ଭଲ ଥିବା କଥା ମୁଁ କାହିଁକି କହୁଅଛି ? ଏହି ତୀର୍ଥକ୍ଷେତ୍ରଗୁଡ଼ିକୁ ବିଭିନ୍ନ ଧର୍ମମତର ଦାଉ ସହିବାକୁ ପଡ଼େ । ହିନ୍ଦୁମାନଙ୍କର ସହଜ ଧର୍ମମତର ପ୍ରଚାର

---

* ରେନେଲଙ୍କ ୧୭୮୮ ମାନଚିତ୍ରରେ ବୈତରଣୀର ମୁହାଣକୁ କନକା ମୁହାଣ (Cunnika bay) ବୋଲି ଲେଖିଛି ଅଛି ।

ବଢ଼ୁଅଛୁ, ମାତ୍ର କୋରାଣରେ ଘୋର ବୈଷମ୍ୟବଜଡ଼ିତ ଧର୍ମମତରେ କଳିତ ବିଶ୍ୱାସ ଆବଶ୍ୟକ ହେଉଥିବାରୁ ତାହା ସମସ୍ତ ହିନ୍ଦୁସ୍ଥାନରେ କ୍ରମଶଃ ଅବନତ ହେଉଅଛୁ ।

**ସୁଜା ଖାଁର** ପୋଷ୍ୟପୁତ୍ର ମହମ୍ମଦ ତକି ଖାଁ କଟକ ଅପେକ୍ଷା ଯାଜପୁରକୁ ଅଧିକ ପସନ୍ଦ କରୁଥିଲେ । ସୁଜା ଖାଁ **ଜାଫାର ଖାଁଙ୍କ** କନ୍ୟାକୁ ବିବାହ କରିଥିଲେ । **ସରଫରାଜ ଖାଁ** ଏହି ପରିଣୀତ ଦମ୍ପତିର ପୁତ୍ର ଥିବାରୁ ମହମ୍ମଦ ତକି ଖାଁ ତାଙ୍କଠାରୁ ବୟୋଜ୍ୟେଷ୍ଠ ଥିଲେ । ବଙ୍ଗଳାର ସୁବାଦାରି ପଦ ଏହି ସରଫରାଜ ଖାଁ ଅମଳରୁ ମୌଳିକ ହୋଇଥିଲା । ସୁଜା ଖାଁ ବଙ୍ଗଳାର ସୁବାଦାର ହୋଇ ନିଜର ଭ୍ରାତା **ମିର୍ଜାହି**ଙ୍କୁ ଓଡ଼ିଶାର ପ୍ରତିନିଧି ପଦରେ ରଖିଲେ । ତିନି ବର୍ଷ ପରେ ମହମ୍ମଦ ତକି ଖାଁଙ୍କୁ ଓଡ଼ିଶାର ପ୍ରତିନିଧି ପଦରେ ନିଯୁକ୍ତ କରି ମୁର୍ଶିଦାବାଦକୁ ପ୍ରେରଣ କଲେ । ମହମ୍ମଦ ତକି ମୃତ୍ୟୁ ପର୍ଯ୍ୟନ୍ତ ଏହି ପଦରେ ନିଯୁକ୍ତ ଥିଲେ । ତାଙ୍କ ପିତାଙ୍କ ଜୀବିତାବସ୍ଥାରେ ଏହା ଘଟିଥିଲା । ତତ୍ପରେ **ମୁର୍ଶିଦ୍ କୁଲି ଖାଁ** ଏହି ପଦରେ ନିଯୁକ୍ତ ହେଲେ । ସରଫରାଜଙ୍କ ମୃତ୍ୟୁ ପରେ **ଆଲିବର୍ଦ୍ଦି ଖାଁ** ବଳପୂର୍ବକ ବଙ୍ଗଳାର ସିଂହାସନ ଅଧିକାର କରିବାରୁ ସେ ତାଙ୍କ ସହିତ ବାଲେଶ୍ୱରଠାରେ ଯୁଦ୍ଧ କରି ପରାଭୂତ ହେଲେ ।

୩ ତାରିଖ ମେ । ଯାଜପୁରର ଦକ୍ଷିଣବର୍ତ୍ତୀ ଭୂଭାଗ ନଦୀଦ୍ୱାରା ଏପରି ବିଭକ୍ତ ହୋଇଅଛୁ ଯେ, ପ୍ରତ୍ୟେକ ଦୁଇ ମାଇଲରେ ଗୋଟିଏ ଲେଖାଏଁ ନଦୀ ଅତିକ୍ରମ କରିବାକୁ ପଡ଼େ । ବୈତରଣୀ ଦୁଇଥର ପାର ହୋଇ ଯାଜପୁରର ଛଅମାଇଲ ଦୂରରେ **ଖରସୁଆ** ପାର ହୋଇ **ବରୁଆଁ** (Burway) ପରଗଣାରେ ପଡ଼ିଥିଲି । ଏହି ସ୍ଥାନରୁ ଏକ ମାଇଲ ଦୂରରେ ଉକ୍ତ ନାମରେ ଗୋଟିଏ ସହର ଅଛୁ । ସେଠାରେ **ମିର-ଜାହି**ଙ୍କ କର୍ତ୍ତୃକ ସ୍ଥାପିତ ଗୋଟିଏ ପ୍ରକାଣ୍ଡ ଉପବନର ଚିହ୍ନମାତ୍ର ଦୃଷ୍ଟ ହୁଏ । ତନ୍ମଧ୍ୟରେ ଥିବା ପୋଖରୀର କେବଳ ପକ୍କା ଘାଟ ଅସ୍ପୃଷ୍ଟ

ଅଛି । ତତ୍ପରେ ଏକ ସୁନ୍ଦର ପ୍ରାନ୍ତର ଅବସ୍ଥିତ ; ତାହା **ଲୁସନିଆ** (Lussonea) ଜଳରେ ପ୍ଲାବିତ ହୁଏ । ଏହି କ୍ଷୁଦ୍ର ନଦୀ ଉପରେ ଗୋଟିଏ ପଥରପୋଲ ଅଛି । ଏହା ମିର ଜାହିଙ୍କର ଜଣେ କର୍ମଚାରୀଙ୍କ-ଦ୍ୱାରା ନିର୍ମିତ ହୋଇଥିବାର କଥିତ ହୁଏ । ସ୍ତମ୍ଭଗୁଡ଼ିକର ମୂଣ୍ଡରେ ଚୂନା ଅଛି ଓ ପୋଲଟି ଜଳମଗ୍ନ ଭୂମି ଉପରେ ପ୍ରସ୍ତୁତ ହୋଇଥିବାରୁ ଦୁଇ ମୁଣ୍ଡରେ ପଥରବନ୍ଧ କିଛି ଦୂର ପର୍ଯ୍ୟନ୍ତ ବିସ୍ତୃତ ଅଛି । ଏତାଦୃଶ ସାବଧାନତା ଅଭାବରୁ ଏ ଦେଶରେ ପୋଲଗୁଡ଼ିକ ଏତେ ଶୀଘ୍ର ଖରାପ ହୋଇଅଛି ।

ଏଠାରୁ ଦୁଇ ମାଇଲ ଯାଇ **ବ୍ରାହ୍ମଣୀ** ନଦୀ ପାର ହୋଇ **ଆଓରଙ୍ଗାବାଦ** ଜମିଦାରୀରେ ପ୍ରବେଶ କଲି । **ବୈତରଣୀ** ଓ ବ୍ରାହ୍ମଣୀ ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳକୁ ଓଡ଼ିଶାର ଶ୍ରେଷ୍ଠ ଅଞ୍ଚଳ ବୋଲି କହାଯାଇ ପାରେ । ଏହି ଅଞ୍ଚଳରେ ଅସଂଖ୍ୟ ତନ୍ତୀ ବାସ କରନ୍ତି । ସେମାନେ ପଗଡ଼ି ପାଇଁ ଖଣ୍ଡଖଣ୍ଡ ମସଲିନ ବୁଣନ୍ତି । ଯେଉଁଠାରେ ଶିଳ୍ପୀମାନଙ୍କ ଉପରେ ଅତ୍ୟାଚାର ହୁଏ ନାହିଁ, ସେଠାରେ ସେମାନେ ସର୍ବଦା ବାସ କରନ୍ତି । ଏହି ହେତୁରୁ ଏ ଅଞ୍ଚଳରେ ଏତେ ଅଧିକ ଲୋକ ରହି-ଅଛନ୍ତି । ଯାଜପୁରର ଫୌଜଦାର (ସୈନ୍ୟନିବାସ) ଯୋଗୁଁ ତାହାର ଭରଣପୋଷଣ ନିମିତ୍ତ ନିକଟବର୍ତ୍ତୀ ଦେଶର ରାଜସ୍ୱ ଏଠାରେ ବ୍ୟୟ ହୁଏ, ଏଣୁ ଏହାକୁ ସରକାରୀ ଜାଗିର କହାଯାଇ ପାରେ ଓ ଅଞ୍ଚଳଯାକ ଫଉଜଦାରଙ୍କ ସମ୍ପତ୍ତି ସଦୃଶ ବିବେଚିତ ହୁଏ । ଏବେ ମରହଟ୍ଟାମାନେ ଅଧୀନସ୍ଥ ଜମିଦାରୀଗୁଡ଼ିକୁ ଶତ୍ରୁରାଜ୍ୟ ସଦୃଶ ଲୁଟପାଟ କରୁଅଛନ୍ତି । ସୈନ୍ୟଦଳର ଉପସ୍ଥିତି ମାତ୍ରକେ ପ୍ରଜାମାନେ ଗ୍ରାମ ଛାଡ଼ି ପଳାୟନ କରନ୍ତି । ଅକର୍ମଣ୍ୟ ଫୌଜଦାର ସମ୍ମୁଖଯୁଦ୍ଧରେ ଶତ୍ରୁଦମନ କରିବାକୁ ଅକ୍ଷମ ଥିବାରୁ ନିଜେ ଉପଢୌକନ ସହ ସେନାପତିଙ୍କୁ ଭେଟି ତାଙ୍କଠାରୁ ଦେଶଲୁଣ୍ଠନର ପ୍ରତିଷେଧକ ଆଦେଶ ଆଣିଥାଏ । କିଛିଦିନ ପର୍ଯ୍ୟନ୍ତ ଫୌଜଦାରୀ ଏକ ବଙ୍ଗରେ ହସ୍ତଗତ

ରହିଲେ ଦେଶର ଲୋକସଂଖ୍ୟା ବୃଦ୍ଧି ହୁଏ । **ଜଗୁ ପଣ୍ଡିତ** ତାଙ୍କର ଜାମାତା **ଇନ୍‌କୋଜିଙ୍କୁ** ( Incoojee ) ଉତ୍ତରାଧିକାରୀ ମନୋନୀତ କରିଅଛନ୍ତି । ସେ ମୋ ସହିତ ସାକ୍ଷାତ୍ କରିବାକୁ ଆସିଥିଲେ ଓ ଭୂତପୂର୍ବ ଗଭର୍ଣ୍ଣର **ଶିବଭଟ୍ଟଙ୍କର** ପ୍ରଶଂସା କଲେ । ମୁଁ ପଚାରିଲି, "ତାହାଙ୍କ ସମ୍ପ୍ରେ ବର୍ତ୍ତମାନ ଗଭର୍ଣ୍ଣରଙ୍କଠାରୁ ତାଙ୍କୁ ଭଲ ପାଉଥିଲେ ?" ସେ ମର୍ଯ୍ୟାଦାନୁମୋଦିତ ସାହସ ସହକାରେ ଉତ୍ତର ଦେଲେ, "ଶିବ ଭଟ୍ଟ ସ୍ୱଦେଶର ଲୁଣ୍ଠିତ ଧନରେ ନିଜ ସୈନ୍ୟମାନଙ୍କୁ ସମ୍ଭାଳୁଥିଲେ, ମାତ୍ର **ଭବାନୀ ପଣ୍ଡିତ** ସ୍ୱଦେଶ ଲୁଣ୍ଠନ କରି ସେମାନଙ୍କୁ ରଖିଅଛନ୍ତି ।"

ଆଜ ସନ୍ଧ୍ୟାବେଳେ **କିମ୍ମୀରା** (Kimmera) କୂଳରେ ବିଶ୍ରାମ ନେଲି । ୟୁରୋପୀୟ ପ୍ରଥାରେ ଭ୍ରମଣକାରୀର ଅସୁବିଧା ଏଠାରେ ପ୍ରଥମ ଅନୁଭୂତ ହେଲା । ସେମାନଙ୍କର ନିତ୍ୟ ପ୍ରୟୋଜନୀୟ ସାମଗ୍ରୀ ଏ ଦେଶରେ ମିଳିବାର ସମ୍ଭାବନା ନ ଥିବାରୁ ସମସ୍ତ ସଙ୍ଗରେ ବହି ନେବାକୁ ପଡ଼େ । ଏହାର କାରଣ ଦୁଇଟି, ପ୍ରଥମଟି ଇଂରେଜମାନଙ୍କ ନିର୍ଦ୍ଦିଷ୍ଟ ବନ୍ଧା ଆଚାର-ବ୍ୟବହାର ଓ ଦ୍ୱିତୀୟଟି ଏ ଦେଶବାସୀଙ୍କର ସମ୍ପୂର୍ଣ୍ଣ ପୃଥକ୍ ରୀତିନୀତି । ଏମାନେ ସ୍ୱଳ୍ପରେ ସନ୍ତୁଷ୍ଟ ରହୁଥିବାରୁ ଏ ଦେଶର ଜଳବାୟୁ ତାଙ୍କର ଆହାର-ବ୍ୟବହାର ପକ୍ଷରେ ବେଶ ଉପଯୋଗୀ । ମୁଁ ନ କହି ରହି ପାରୁ ନାହିଁ ଯେ, ମୋର ସହଗାମୀ ରାଜକର୍ମଚାରୀଟି ମୋର ଅଭାବର ଶତାଂଶର ଏକାଂଶ ସୁଦ୍ଧା ଉପଲବ୍ଧି କରୁ ନାହିଁ । ତାହା ସହିତ ଗୋଟିଏ ଅସ୍ଥିଚର୍ମସାର ଘୋଟକ ଓ ଜଣେ ଚତୁର୍ଦ୍ଦଶବର୍ଷୀୟ ଭୃତ୍ୟ ଅଛି । କର୍ମଚାରୀ ଓ ଭୃତ୍ୟ ପ୍ରତ୍ୟୁଷରୁ ଶଯ୍ୟାତ୍ୟାଗ କରନ୍ତି । ମୁନିବ ସ୍ନାନାନ୍ତେ ପୂଜା ଆରାଧନା କରେ ଓ ଭୃତ୍ୟ ତୋଷକର ପଲ୍ଲାଣ ଓ ଚମଡ଼ାର ଗଦି ଘୋଡ଼ାର ପିଠିରେ ପକାଏ । ଅବଶିଷ୍ଟ ବିଛଣା ପୋମେଲର (Pommel) ଅଭାବ ପୂରଣ କରେ । ଏହି ସମସ୍ତ ଏକତ୍ର କରି ପୋଟଳିଙ୍ଗାଏ କଷା ହୁଏ । ଏହି ଭାବରେ ରାତିର ବିଛଣା ଦିନରେ ଜିନର କାମ କରେ । ଠିକଣାରେ ପହଞ୍ଚିବା ପୂର୍ବରୁ ସେହି ବାଳକ ଭୃତ୍ୟଟି ଘୋଡ଼ା ଓ ସବାର ଉଭୟର

ଯତ୍ନ ନେବାର ଚେଷ୍ଟାରେ ଥାଏ । ଗ୍ରାମକୁ ଯାଇ କଣି, ମାଗି ବା ଚୋର କର ଯେଉଁ ବଡ଼ାକ କୁଟା ଆଣିଥାଏ, ତାହା ଆମ୍ଭେମାନେ ପହଞ୍ଚିଲା ମାତ୍ରକେ ପଶୁଙ୍କର ମୁହଁରେ ପକାଇ ଦଏ । ପଲ୍ଲଣ ବାହାର କର ଗଛ ମୂଳରେ ବଛଣା ବଛାଇ ଦେଇ ଗୋଟିଏ କ୍ଷୁଦ୍ର ପିତଳ ଲୋଟାରେ ପାଣି ରଖିଦଏ । ତପୂରେ ଅଟା, ପାଣି ଓ ଲୁଣ ଗୋଳାଇ ଦୁଇଖଣ୍ଡ ରୁଟି କର ନିଆଁରେ ସେକେ । ସେଥିରୁ ଗୋଟିଏ ଓ ପାଣି ମଦଏ ମୁନବର ମଥା ଉପରେ ଥୋଇଦଏ । ସେ ତାହା ଖାଇ ନିଶ୍ଚିନ୍ତରେ ଶୋଇପଡ଼େ । ଗବ୍ବ ଭୃତ୍ୟଟି ତପୂରେ ଘୋଡ଼ାକୁ ଯତ୍ନପୂର୍ବକ ବାନ୍ଧି ଦେଇ ନିଜେ ବିଶ୍ରାମ ନିଏ । ଉପର ଓଳ ଗୃହଁଠାବେଳେ ସେ ବଜାରକୁ ଯାଇ ଗୃଉଳ, ତରକାରୀ, ମିଳିଲେ କିଛି ମାଛ ବ କଣି ଆଣେ । ଶୁକ୍ରବାର ଦନ ସେମାନେ ପ୍ରାୟ ଗୋଟିଏ କୁକୁଡ଼ାକୁ ଖଣ୍ଡଖଣ୍ଡ କର କାଟି ଝୋଳ କରନ୍ତି । ସେମାନଙ୍କର ରୋଷାଇ ୫ଟା ବେଳେ ଆରମ୍ଭ ହୁଏ । ଗୋଟିଏ ବଡ଼ ପାତ୍ରରେ ଭାତ ରନ୍ଧା ହୁଏ, ତାହାର ଢାଙ୍କୁଣିରେ ତରକାରୀ ରଖାଯାଏ; ଏଣୁ ବାସ୍ତବରେ ବେଶ୍ ଗରମ ଥାଏ । ସୂର୍ଯ୍ୟାସ୍ତ ସମୟକୁ ଖାଦ୍ୟ ପ୍ରସ୍ତୁତ ହୋଇ ସାରିଥାଏ । ତପୂରେ ଅତ୍ର ଉସ୍ତୁକ ହୋଇ ସେମାନେ ଖାଇ ବସନ୍ତି । ହାୟ ! ପ୍ରାଚୁର୍ଯ୍ୟର ଅଭାବ ଯାହାର ମନରେ ସ୍ଥାନ ପାଇ ନାହିଁ, ତାହାର ସୁଖ ଶାନ୍ତି ନିମିତ୍ତ ସେ ଲୋକ କେତେ ସ୍ୱଳ୍ପ ପଦାର୍ଥରେ ସନ୍ତୁଷ୍ଟ ହୋଇଥାଏ ! ଏହି ସୁଖୀ ପଠାଣ ତୁଳନାରେ ହତଭାଗ୍ୟ ମୁଁ କେଡ଼େ ଦୁଃଖୀ ! ମୋ ଦଳରେ **ମିଷ୍ଟର ରବି** ନାମକ ଜଣେ ୟୁରୋପୀୟ କର୍ମଚାରୀ ଭଦ୍ର ଯୁବକ, ଛଅଗୋଟି ଘୋଡ଼ାକ, ଦଶଟି ଓଟ, ଛଅଗୋଟି ତମ୍ବୁ, ୩୦ ଜଣ ଏ ଦେଶୀୟ ଭୃତ୍ୟ ଓ ୨୬ ଜଣ ସିପାହୀ ଥିଲେ । ମୋର ପୋଷାକ ପେଟରୀ ଅତିଶୟ ଭାରୀ, ଏଥିରେ ଚାରି ସେଟ ପୋଷାକ ଓ ୪୦ ଟି ସୂତାର କମିଜ । ସୂତାର ଏତେ ଅଧିକ ପୋଷାକ ରଖିବାର କାରଣ ଏହି ଯେ, ମୁଁ ଯେଉଁଠାରେ ୨।୪ ଦନ ରହୁଥିଲି, ସେଠାରେ ମୋର ଧୋବାକୁ ଲୁଗା କାଚିବାକୁ ଦେଉଥିଲି । ପକ୍ଷାନ୍ତରରେ ସର୍ଦ୍ଦାର ଖାଁ ମୋତେ କହୁଥିଲେ ଯେ, ପ୍ରତ୍ୟେକ ପାଣିଥିବା ପୋଖରୀରେ ଧୋବା ପାଇବ, ଯେ କ·

ଅଧଘଣ୍ଟାରେ ଲୁଗା କାଚ ଶୁଖାଇ ଦେବ ଓ ପ୍ରତ୍ୟେକ ସହରରେ ଗୋଟିଏ ଦୋକାନରେ ଦରଜି ପାଇବ, ଯେ କି ତାହାର ପୋଷାକ ଛଅ ଘଣ୍ଟା ଭିତରେ ସିଲେଇ କରିଦେବ । ଏଣୁ ପୋଷାକ ପେଟରି ତାହାର ସଙ୍ଗରେ ଆଦୌ ନ ଥିଲା । ତମାଖୁର ଧୂଆଁ ପିଇ ସେ ଯେ ଆରାମ ପାଏ, ମୁଁ ମଦ ପିଇ ତଦ୍ରୂପ ଆରାମ ପାଏଁ । ଉପରେ ତାଙ୍କର ଖାଦ୍ୟ ସାମଗ୍ରୀର ତାଲିକା ଦେଇଅଛି । ମାତ୍ର ଇଂରେଜମାନେ କହନ୍ତି ଯେ, ଉକ୍ତ ମାଂସ, ଶାକସବଜି, ଲହୁଣୀ ଓ ରୁଟି ନ ହେଲେ ସେ ଦିନର ଆହାର ନାହିଁ; ଆଉ ମୋ ପକ୍ଷରେ କେବଳ ବିସ୍କୁଟ ଖାଇବା ବଡ଼ କଷ୍ଟକର ହେଉଅଛି । ତାହାର ଆହାର ଛଅଟି ପଦାର୍ଥ ଉପରେ ନିର୍ଭର କରେ । ମାତ୍ର ତାହାଠାରୁ ମୋର ଅବସ୍ଥା ଏତେଗୁଡ଼ିଏ କାରଣ ଉପରେ ନିର୍ଭର କରୁଥିବାରୁ ମୁଁ ନିତାନ୍ତ ନିରସ ହୋଇ ପଡ଼ିଲିଣି । ବେଳେବେଳେ ମୋତେ ଅଶାନ୍ତିରେ ନିଦ୍ରା ଯିବାକୁ ପଡ଼େ, ମାତ୍ର ସେ ମୋର ଅନୁଚର-ମାନଙ୍କ ସହିତ ମିଳିମିଶି ସନ୍ଧ୍ୟା ସମୟଟି ଆମୋଦକର ଗଳ୍ପଗୁଜବରେ କଟାଇ ଦିଏ । କେବେକେବେ ସେମାନେ ନୀରବ ରହି ଆଗ୍ରହ ସହକାରେ କଥକର କଥା ଶୁଣନ୍ତି । ସେମାନଙ୍କର ଆମୋଦପ୍ରମୋଦ ଓ ମୋର ପ୍ରାଚ୍ୟଦେଶର ଭାଷା ଓ ଆଚାର ବ୍ୟବହାର ଶିକ୍ଷା ନିମିତ୍ତ ଜଣେ କଥକ ନିଯୁକ୍ତ ହୋଇ ମୋ ସହିତ ରହିଥିଲେ ।

୪ ତାରିଖ ମେ । ଆଜି **ଆଲଣ୍ଡି** ଓ ଆଉରଙ୍ଗାବାଦ ମଧ୍ୟବର୍ତ୍ତୀ ଅତି ମନୋରମ ଉପତ୍ୟକାରେ ପ୍ରବେଶ କଲି । ଗ୍ରୀଷ୍ମ ଋତୁରେ ମଧ୍ୟ ଏହା ସବୁଜ ଓ ସତେଜ । ନିକଟବର୍ତ୍ତୀ ପାହାଡ଼ଗୁଡ଼ିକର ଝରଣାରେ ଏ ସ୍ଥାନ ପ୍ରାୟ ଆର୍ଦ୍ର ଥାଏ । ସର୍ବଶେଷ ଉପତ୍ୟକା ମଧ୍ୟରେ **ଗୁଲଗୁଲା ନାଲ** * ପ୍ରବାହିତ । ଏହା ଉପରେ ସୁଦୃଢ଼ ଗୋଟିଏ ପଥରପୋଲ ଅଛି । ପଥ ଏତେ କର୍ଦ୍ଦମାକ୍ତ ଯେ, ବର୍ଷାକାଳରେ ଅଥବା ୨।୩ ଅସରା ଭଲ ବର୍ଷା ପରେ ଯାତାୟାତ ଅସମ୍ଭବ ହୁଏ । ଏହି ସମୟରେ ପଥିକମାନେ କମ୍ପୀରୀ

* ଅଧୁନିକ ନାମ ଶରଣଅ ନାଲ ।

ନଦୀର ଦକ୍ଷିଣକୂଳରେ ପର୍ବତର ମୂଳଦେଶ ପର୍ଯ୍ୟନ୍ତ ଆସି ତାହାର ପ୍ରାୟ ଅର୍ଦ୍ଧେକ ଦୂର ପାହାଡ଼ ଉପରେ ଉଠି ପାହାଡ଼ର ଶିଖରଦେଶରେ ଥିବା ଗୋଟିଏ ଫଙ୍କାରର ଘର ପାର ହୁଅନ୍ତି। ତତ୍ପରେ ଅବତରଣ କରି ପୋଲର ଉତ୍ତରପୂର୍ବ ଦିଗରେ ଅନ୍ୟ ପଥରେ ପହଞ୍ଚନ୍ତି। ସଡ଼କର ପ୍ରାୟ ଏକ ମାଇଲ ଦକ୍ଷିଣ ଦିଗରେ ଆଓରଙ୍ଗାବାଦ ଗଡ଼। ପାହାଡ଼ ଉପରେ ଅବସ୍ଥିତ ଥିବାରୁ ଏହା ଗୋଟିଏ ଅତି ସୁରକ୍ଷିତ ଗଡ଼। ଏଠାରେ ରାଜାଙ୍କର ଗୋଟିଏ କଚେରି ଅଛି। ତାଙ୍କୁ ସେନାପତିର ପ୍ରତ୍ୟକ୍ଷ ଦୃଷ୍ଟିରେ ରଖିବା ପାଇଁ ମରହଟ୍ଟାମାନଙ୍କର ମଧ୍ୟ ଗୋଟିଏ ସେନାନିବାସ ଏଠାରେ ଅଛି। ଏମାନେ ଏହି ଘାଟି ଉପରେ ଗମନକାରୀ ସୈନ୍ୟମାନଙ୍କୁ ଅକ୍ଲେଶରେ ବିପଦାପନ୍ନ କରି ପାରିବେ, ମାତ୍ର ଏହା ଏକାନ୍ତ ଅସମ୍ଭବ ଯେ, ସେମାନେ ମରହଟ୍ଟାମାନଙ୍କ ସହିତ ଏକମନ ହୋଇ କାର୍ଯ୍ୟରେ ପ୍ରବୃତ୍ତ ହେବେ। ଏହି ପ୍ରାନ୍ତରଟି ହରିହରପୁର ନଦୀ ପର୍ଯ୍ୟନ୍ତ ବିସ୍ତୃତ। ଏଥିରେ ଜଳଭୂମିର ଘାସ ସଦୃଶ ଲମ୍ବଲମ୍ବ ଘାସ ପ୍ରଚୁର ପରିମାଣରେ ଜନ୍ମି ଅଛି। ଏହି ନଦୀ ପାର ହୋଇ **ଅରଣପୁର**ରେ ପହଞ୍ଚିଲି। ଏହା ପୂର୍ବେ ଗୋଟିଏ ସମୃଦ୍ଧ ଗ୍ରାମ ଥିଲା, ଏବେ ମରହଟ୍ଟାମାନଙ୍କ ଲୁଣ୍ଠନରେ ବିଧ୍ୱସ୍ତ ହୋଇଅଛି। ଏଠାରେ ଜଣେ ଉଦାରହୃଦୟ ହିନ୍ଦୁ ଭିକ୍ଷୁକ ପଥିକମାନଙ୍କର ଆଶ୍ରୟ ନିମିତ୍ତ ଦୁଇଟି ଘର କରି ଦେଇଅଛନ୍ତି। ବିଶ୍ରାମସ୍ଥଳସ୍ଥ ଲୋକସଂଖ୍ୟାର ଉପଯୋଗୀ ଖାଦ୍ୟସାମଗ୍ରୀମାନ ନିକଟବର୍ତ୍ତୀ ଗ୍ରାମବାସୀମାନେ ଏଠାକୁ ବିକ୍ରୟାର୍ଥେ ଘେନି ଆସନ୍ତି। କଟକର ଅନେକ ଗଉଡ଼ ଦୁଧ ଛାଡ଼ିଥିବା ଗାଈ ଓ ଅକାମୀ ବଳଦଗୁଡ଼ିକୁ ଏହି ପ୍ରକାଣ୍ଡ ପଡ଼ିଆରେ ଚରାନ୍ତି ଓ ଏଠାରେ ଅସ୍ଥାୟୀ କୁଡ଼ିଆ କରି ରହନ୍ତି। ମରହଟ୍ଟାମାନେ ଲୁଣ୍ଠନରୁ ବିରତ ଥିବାବେଳେ ତାଙ୍କର ଅନୁଗାମୀ ଦସ୍ୟୁବୃନ୍ଦ ଲୋକେ ଏଠାକୁ ଆସି ବାସ କରନ୍ତି। ଏମାନଙ୍କର ଜଣେ ସର୍ଦ୍ଦାର ଥାଏ, ସେ ସେନାପତିକୁ ଏମାନଙ୍କର ହିସାବ ବୁଝାଏ। ଏମାନେ ପ୍ରତ୍ୟେକେ ଗୋଟିଏ ଗୋଟିଏ ୧୦ ଫୁଟ ଲମ୍ବ ଲୁହାର ଶାବଳ ରଖିଥାନ୍ତି। ତଦ୍ଦ୍ୱାରା ସେମାନେ ମାଟି ଭିତରେ ଯେଉଁଠାରେ ଅର୍ଥ ଲୁକ୍‌କାୟିତ ଥିବାର

ଅନୁମାନ କରନ୍ତି, ସେଠାରେ ମାଟି କଣା କରି ପରୀକ୍ଷା କରନ୍ତି ଓ ମନ୍ତ୍ର ପଢ଼ି ଶାବଳର ଅଗ ଶୁଙ୍ଘନ୍ତି ଏବଂ ନିଜର ଆବିଷ୍କାର ନାକ ସାହାଯ୍ୟରେ ଜାଣି ପାରୁଥିବାର ଛଳନା କରନ୍ତି । କିନ୍ତୁ ଏହା କେବଳ ସେମାନଙ୍କର ଚତୁରତା ମାତ୍ର । କିପରି ଭାବରେ ଶାବଳଟି ମାଟିରେ ପଶିଅଛି, କେତେଦିନ ପୂର୍ବେ ମାଟି ଖୋଳା ହୋଇଅଛି, କିପରି ଯତ୍ନ ସହକାରେ ମାଟି ପୁନର୍ବାର ଢଳା ହୋଇଅଛି ଅଥବା କିପରି କୌଶଳରେ ଉପରିଭାଗ ସମାନ କରାଯାଇଅଛି—ଇତ୍ୟାଦି କାରଣରୁ ସେମାନେ ଭୂଗର୍ଭସ୍ଥ ଧନର ସନ୍ଧାନ ପାନ୍ତି । ସୈନ୍ୟମାନେ ଲୁଣ୍ଠନକର୍ମରେ ବାହାରିବାର ଶୁଣି ସେମାନେ ଆମୋଦପ୍ରମୋଦରେ ଭୋଜନାଦି ଶେଷ କରି ହୁଡ଼ଆଗୁଡ଼ିକ ପୋଡ଼ି ଦିଅନ୍ତି ।

୫ ତାରିଖ ମେ । ଅରଖପୁରଠାରୁ କୃଷି ହେଉଥିବା ଜମି ଦେଖାଯାଏ । ଏଥିରେ ମଧ୍ୟେ ମଧ୍ୟେ ବଣ ବୁଦା ଅଛି । ସମସ୍ତ ଅଂଶ ଆବାଦ ହୋଇ ନାହିଁ । ଏପରି ଭୂମି ଦେଢ଼ ମାଇଲ ପର୍ଯ୍ୟନ୍ତ ବିସ୍ତୃତ । ତତ୍ପରେ ଘୋର ଅରଣ୍ୟ ମଧ୍ୟରେ ତୁମକୁ ପଶିବାକୁ ପଡ଼ିବ । ସଡ଼କଠାରୁ ଅଳ୍ପ ଦୂରବର୍ତ୍ତୀ ନଦୀ ତୁମର ଦକ୍ଷିଣରେ ରହିବ । କୂଳବର୍ତ୍ତୀ ଗ୍ରାମର ନାମାନୁସାରେ ଏହି ନଦୀକୁ ଏଠାରେ **ଜିପୁର୍ ନାଲା** * କହନ୍ତି । ପ୍ରକୃତରେ ଏହା ମହାନଦୀର ଗୋଟିଏ ଶାଖା ମାତ୍ର । କଟକ ପାଖରେ ଏହା ମୂଳନଦୀରୁ ବିଚ୍ଛିନ୍ନ ହୋଇଅଛି । ଏହା ଯେଉଁ ସବୁ ଗ୍ରାମ ନିକଟରେ ବହି ଯାଇଅଛି, ତଦନୁସାରେ ଏହାର ନାମକରଣ ହୋଇଅଛି । ଏହା ଅରଖପୁର ନିକଟରେ ବହୁଅଛି । ମୁଁ ଯେଉଁଠାରେ ଏହି ନଦୀକୁ ପାର ହୋଇଥିଲି ସେଠାରେ ଏହା ହରିପୁର ନଦୀ ନାମରେ ଅଭିହିତ । ସେହି ଘାଟଠାରୁ ଦୁଇ ମାଇଲ ତଳେ ଏହା କାମ୍ଭୀରି ନଦୀରେ ମିଶିଅଛି ।

---

* ଜୟପୁର ନଈ । ଏହାର ଅଧୁନିକ ନାମ ସେଙ୍କ । ଏହା ବିରୂପାର ଶାଖାବିଶେଷ ।

ଏହା ସତ୍ୟ ଯେ, ଏ ଦେଶର ଓ ବଙ୍ଗଳାର ନଦୀଗୁଡ଼ିକର ନାମ ପରିବର୍ତ୍ତନ ହେତୁରୁ ପର୍ଯ୍ୟଟକ ପକ୍ଷରେ ସେଗୁଡ଼ିକର ପ୍ରକୃତ ନାମ ସ୍ଥିର କରିବା ଦୁରୂହ ବ୍ୟାପାର ହୋଇଅଛି । ବିଶେଷତଃ ହରକରାମାନେ ଜିଜ୍ଞାସୁ ନ ଥିବାରୁ ସେମାନଙ୍କୁ କୌଣସି ନଦୀର ନାମ ପଚାରିବା ମାତ୍ରକେ ନଦୀ-ସ୍ରୋତର ଗତି ପ୍ରତି ଲକ୍ଷ୍ୟ ନ ରଖି ଓ ପରବର୍ତ୍ତୀ ଗ୍ରାମର ନାମ ନ ଜାଣି ବାର ମାସ ଗଲା ପରି କହି ପକାନ୍ତି ଯେ, ଏହା କଣା ନଦୀ । ଭ୍ରମଣକାରୀ ଏହାକୁ ନାମବାଚକ ଶବ୍ଦରୂପେ ଗ୍ରହଣ କରୁଥିବାରୁ ଇଂରାଜୀ ସର୍ଭେରେ ଏତେ ଅଧିକ କଣା ନଦୀର ନାମୋଲ୍ଲେଖ ଅଛି ।

ନଦୀକୁ ଦକ୍ଷିଣ ପାର୍ଶ୍ୱରେ ରଖି ଯାଉଁ ଯାଉଁ ଏକ ସ୍ଥାନରେ ପହଞ୍ଚିବ, ସେଠାରେ **ମୌସୁମପୁର** ଗ୍ରାମ ଥିଲା । ଏବେ ଏଠାରେ ସପ୍ତାହରେ ଦୁଇଦିନ ହାଟ ବସେ । ଉପ୍ରରେ ନଦୀଗର୍ଭଭେଦୀ ଗୋଟିଏ ପାହାଡ଼ ପଥରୋଧ କରିଥିବାରୁ ଏକ ଦୁରାରୋହ ଘାଟି ପଡ଼ିବ । ପଥଟି ବଡ଼ ସଙ୍କୀର୍ଣ୍ଣ, ପ୍ରାୟ ଚଉଡ଼ାରେ ୩ ଫୁଟ, ତାହା ପୁଣି ଛିନ୍ନ ପଥରରେ ପୂର୍ଣ୍ଣ ଓ ପାହାଡ଼ର ମୂଳ ଦେଶରେ ପ୍ରସାରିତ । ପାହାଡ଼ର ଉଚ୍ଚତା ପଥକୁ ମାଡ଼ି ପଡ଼ିଲା ପରି ବୋଧ ହୁଏ । ଅପେକ୍ଷାକୃତ ଗଭୀର ନଦୀ ମଧ୍ୟ ନିକଟରେ ପ୍ରବାହିତ । ପାହାଡ଼ ଉପରେ ଗୋଟିଏ ପଥରର ଠାକୁରବାଡ଼ି ଅଛି । ସେଠାରେ ଥାଇ ଆକ୍ରମଣକାରୀ ସୈନ୍ୟମାନଙ୍କୁ ଅକ୍ଳେଶରେ ବିପଦାପନ୍ନ କରାଯାଇ ପାରେ । ମରହଟ୍ଟାମାନଙ୍କର ସେପରି କିଛି ବିଶେଷ ପଦାତି ନାହାନ୍ତି, ଅଶ୍ୱାରୋହୀ ସୈନ୍ୟମାନେ ମଧ୍ୟ ଏ ଘାଟିରେ କିଛି ଅନିଷ୍ଟ କରି ପାରିବେ ନାହିଁ । ଏଣୁ ଦଶେ ମାତ୍ର ସିପାହୀଙ୍କୁ ଦେବାଳୟରେ ରଖିଦେଲେ, ସେମାନେ ଶତ୍ରୁମାନଙ୍କୁ ଭୀତତ୍ରସ୍ତ କରି ପକାଇବେ, ଇତି ମଧ୍ୟରେ କମାଣ ଆଦି ବହି ନେବାର ପଥ ମଧ୍ୟ ପ୍ରସ୍ତୁତ ହୋଇ ପାରିବ ।

ଏଠାରୁ ଏକ ମାଇଲ ଦୂର ପର୍ଯ୍ୟନ୍ତ ନଦୀଟି ଭ୍ରମର ଡାହାଣକୁ ରହିବ । ଉପ୍ରରେ ଖୋଲା ପଡ଼ିଆ । ପଦମ୍ପୁରରେ ପହଞ୍ଚିଲେ ପୁରୀ ଅଦାଲି

କମି ଦେଖାଯିବ । ଓଡ଼ିଶା ନବାବଙ୍କର ପ୍ରଧାନ କର୍ମଗୃହୀ **ଫତେଖାଁର** ଅଧୀନରେ ସେଠାରେ ଗୋଟିଏ ସୈନ୍ୟନିବାସ ଅଛି । ଏହି ସୈନ୍ୟମାନଙ୍କୁ ମରହଟ୍ଟା ଛାଉଣିର ଆଗୁଆ ସୈନ୍ୟ ବୋଲିଯାଇ ପାରେ । ସୁଶୃଙ୍ଖଳରୂପେ ରକ୍ଷିତ ଥିବା ଫଳରୁ ଏଠାରେ ଅନେକ ତନ୍ତୀ ବାସ କରନ୍ତି । ଏଠାରୁ **ମହାନଦୀ** ପର୍ଯ୍ୟନ୍ତ ବାଲି ବିସ୍ତାରିତ, ସମୟ ସମୟରେ ମହାନଦୀରେ ବନ୍ୟା ହେଲେ ଏହି ଗ୍ରାମପର୍ଯ୍ୟନ୍ତ ଜଳ ମାଡ଼ିଆସେ ।

୭ ତାରିଖ ମେ । ଏଠାରୁ **କଟକ** ଏକ ବୃହତ୍ ନଗରୀ ରୂପେ ଦେଖାଯାଏ । ନଗରୀର ପୀଠଭୂମିର ସ୍ରୋତଶକ୍ତି-ପ୍ରତିରୋଧକାରୀ ପ୍ରାଚୀରସଦୃଶ ନଦୀବନ୍ଧ, ବହୁ ସୁରମ୍ୟ ମସଜିଦ ଓ **ଇଉରୋପୀୟର ପ୍ରାସାଦର** ପଶ୍ଚିମାଂଶର ପଶ୍ଚାନ୍ତର ସଦୃଶ ଦୁର୍ଗର ଦୃଶ୍ୟ ଏକତ୍ର ମିଳିତ ହୋଇଥିବାରୁ କଟକ ନଗରୀର ଦୃଶ୍ୟ ଅତିଶୟ ମନୋରମ ହୋଇଅଛି । ଏହା ସାଢ଼େ ଦୁଇ ମାଇଲ ଦୂରବର୍ତ୍ତୀ ବିପରୀତ ତୀରରୁ ଦେଖିବାର ସୁବିଧା ମିଳେ ଓ ନଦୀର ଗତି ସରଳ ଥିବାରୁ ସମସ୍ତ ନଗରୀଟି ପଲକମାତ୍ରକେ ନୟନପଥରେ ପ୍ରତିଭାତ ହୁଏ । ମାତ୍ର ପଦବ୍ରଜରେ ଉତ୍ତପ୍ତ ବାଲୁକାରାଶି ଅତିକ୍ରମ କରି ନଦୀ ପାର ହେବା ପରେ କି ଶୋଚନୀୟ ପତନର ଚିହ୍ନ ଦେଖା ନ ଯାଏ ! ତୁମେ ଦେଖିବ ଯେ, ଉଚ୍ଚପୀଠଗୁଡ଼ିକ କେବଳ ଧ୍ୱଂସାବଶେଷର ଅବର୍ଜନା ମାତ୍ର । ପ୍ରସ୍ତରବନ୍ଧ ତାହାର ସ୍ୱଳ୍ପ ଉପରେ ଦଣ୍ଡାୟମାନ । ସହରର ଅସ୍ତିତ୍ୱ ଏହି ବନ୍ଧ ଉପରେ ନିର୍ଭର କରୁଥିଲେ ମଧ୍ୟ ଲୋକେ ଏହାର ଉପକରଣଗୁଡ଼ିକ ଅପହରଣ କରୁଅଛନ୍ତି । ମରାମତି ହେଉଥିବା ମସଜିଦଗୁଡ଼ିକ ଦସ୍ୟୁ ଭିକ୍ଷୁକମାନଙ୍କ ଆବାସସ୍ଥଳୀ ହୋଇଅଛି । ଦୁର୍ଗଟିକୁ ମଧ୍ୟ ପରୀକ୍ଷା କରି ଦେଖିଲେ ଜଣାଯାଏ ଯେ, ତାହା ଆଦୌ ସୁଦୃଢ଼ ନୁହେ ।

ପ୍ରକୃତରେ କଟକ ନଗରୀ ତ୍ରିଭୁଜାକାର, ମହାନଦୀ ଓ **କାଠଯୋଡ଼ୀର** ବିଚ୍ଛିନ୍ନତା ଯୋଗୁଁ ଯେଉଁ ଅପ୍ରଶସ୍ତ ଭୂଖଣ୍ଡ ସୃଷ୍ଟ ହୋଇଅଛି, ତଦୁପରି ଏହା ଅବସ୍ଥାପିତ । ଏହାର ଉତ୍ତର ଓ ପଶ୍ଚିମ ଦିଗରେ ମହାନଦୀ

ପ୍ରବାହିତ; ତତ୍ପରେ ଉତ୍ତର-ପୂର୍ବମୁଖରେ ପ୍ରବାହିତ ହୋଇ ସାଳନ୍ଦୀ, ଗେଙ୍ଗୁଟି, ବୈତରଣୀ, ଖରସ୍ରୁଆ, ବ୍ରାହ୍ମଣୀ, କମ୍ପୀର ପ୍ରଭୃତି ବହୁ ନଦୀ ସହିତ ମିଳିତ ହୋଇ ବାଲେଶ୍ୱର ଜେଲା ନିକଟବର୍ତ୍ତୀ କନିକା ଉପସାଗରରେ ପଡ଼ିଅଛି । କାଠଯୋଡ଼ୀ ନଦୀ କଟକର ଦକ୍ଷିଣ ଓ ଦକ୍ଷିଣ-ପଶ୍ଚିମ ପାର୍ଶ୍ୱବର୍ତ୍ତୀ ବନ୍ଧ ଧୌତ କରି ଦକ୍ଷିଣ-ପୂର୍ବ ମୁଖରେ ପ୍ରବାହିତ ହୋଇ ଦୁଇ ଶାଖାରେ ବିଭକ୍ତ ହୋଇଅଛି । ସେଥିରୁ ଗୋଟିଏ ଶାଖା ମହାନଦୀ ସହିତ ପୁନର୍ବାର ମିଳିତ ହୋଇ ଜଗନ୍ନାଥ କ୍ଷେତ୍ରର ୨୫ ମାଇଲ ଉତ୍ତରବର୍ତ୍ତୀ ସୁଦୂର **ପାଲମିରା ପଏଣ୍ଟ**ଠାରେ ସମୁଦ୍ରରେ ପଡ଼ିଅଛି । ଅପରଟି **କୁଆଖାଇ** ନାମରେ ଓଡ଼ିଶାର ଦକ୍ଷିଣ ସୀମା **ଚିଲିକା** ହ୍ରଦରେ ପଡ଼ିଅଛି । ଯେଉଁ ଦ୍ୱିଭୁଜ ଉପରେ କଟକ ସହର ସ୍ଥାପିତ, ତାହାର ଗୋଟିଏ ଗୋଟିଏ ବାହୁ ଦୁଇ ମାଇଲ ଦୀର୍ଘ, ମାତ୍ର କାଠଯୋଡ଼ୀ କୂଳବ୍ୟାପୀ ବାହୁ ଉପରେ ଅଧିକାଂଶ ଲୋକବସତି ଅଛି ଓ ଏଠାରେ ଏହି ପ୍ରଦେଶର **ଗଭର୍ଣ୍ଣରଙ୍କ କୋଠି ଲାଲବାଗ** ନିର୍ମିତ । ଏହା ଗୋଟିଏ ପ୍ରକାଣ୍ଡ, ବହୁପ୍ରାଙ୍ଗଣବିଶିଷ୍ଟ, ମୁରଜାତୀୟ* ଶିଳ୍ପକଳାବ୍ୟଞ୍ଜକ ଅଟ୍ଟାଳିକା; ମାତ୍ର ବହୁକାଳ ସଂସ୍କାରବର୍ଜିତ ହୋଇଅଛି । ତେଣୁ ଏକାଂଶ ପତନୋନ୍ମୁଖ ହେଲେ ବାସୋପଯୋଗୀ ଅପରାଂଶରେ ଗଭର୍ଣ୍ଣର କାଳାତିପାତ କରନ୍ତି । ଏହି ରାଜପ୍ରାସାଦର ସିଂହଦ୍ୱାରଠାରୁ ବଡ଼ ସଡ଼କ ବାହାରିଅଛି । ଏହା ପୂର୍ବେ ଦେଢ଼ମାଇଲ ଲମ୍ବରେ ସରଳରେଖାକ୍ରମେ ନିର୍ମିତ ହୋଇଥିଲା ଓ ବର୍ତ୍ତମାନ ସହରର ପ୍ରଧାନ ବ୍ୟବସାୟର କେନ୍ଦ୍ରସ୍ଥଳୀ । ଏହି ସଡ଼କର ଦକ୍ଷିଣପାର୍ଶ୍ୱରେ **ଇଂରେଜକୋଠି** ଅବସ୍ଥିତ । ଏତେ ସମୃଦ୍ଧିଶାଳୀ କମ୍ପାନୀର ମର୍ଯ୍ୟାଦା ପକ୍ଷରେ ଏହି କୋଠି ଅତି ନିକୃଷ୍ଟ ମନେ ହେଲା ।

ବର୍ତ୍ତମାନର କଟକ ସୁରକ୍ଷିତ ନୁହେ । କେବଳ ମହାନଦୀକୂଳରେ **ବାରବାଟୀ** ନାମକ ଗୋଟିଏ ଦୁର୍ଗ ଅଛି । ଏହା ବାରବାଟୀ ଅର୍ଥାତ୍

* ଉତ୍ତର ଅଫ୍ରିକାର ଅଧିବାସୀ ମୁସଲମାନ ।

୨୪୦ ବର୍ଗ ଭୂମି ଉପରେ ନିର୍ମିତ । ଏଥିରେ ଦୁର୍ଗ ଓ ତତ୍ସହିତ ସେନାଧ୍ୟକ୍ଷର ଜାଗିରଭୂମି ଅଛି, କାରଣ ଦୁର୍ଗଟି କେବଳ ୮୦୦ ବର୍ଗଗଜ ବୋଲି ମୋର ଅନୁମାନ ହେଲା । ଏହା ବର୍ଗାକାରରେ ଗଠିତ, ତିନି କୋଣରେ ତିନୋଟି ବୁରୁଜ ଅଛି । ଉତ୍ତର-ପଶ୍ଚିମ କୋଣର ବୁରୁଜଟି ଅତିଶୟ ବଡ଼ । ଦୁର୍ଗର ସେହି ପାର୍ଶ୍ୱରେ ପରିଦୃଷ୍ଟ ଗୋଟିଏ ମସଜିଦର ପ୍ରତିପକ୍ଷତା ଉଦ୍ଦେଶ୍ୟରେ ଏହି ଉତ୍କର୍ଷ କୌଣସି ୟୁରୋପୀୟ ଇଞ୍ଜିନିୟରଦ୍ୱାରା ସାଧିତ ହୋଇଅଛି । ପରିଖାର ଓସାର ୨୦ ଗଜ ଓ ଗଭୀରତା ୭ ଗଜ, ଏହା ପଥରରେ ବନ୍ଧା ଓ ବହିର୍ଭାଗ ବର୍ଗାକାର । ବୁରୁଜଗୁଡ଼ିକ ଦୁର୍ଗ ନିର୍ମାଣ ପରେ ନିର୍ମିତ ହୋଇଥିବାରୁ ସେଗୁଡ଼ିକର ନାଲୀ ପରିଖାରେ ଦେଖାଯାଏ ନାହିଁ । ଦୁର୍ଗର ପ୍ରାଚୀରରେ ୧୮ ଇଞ୍ଚ ଓସାର ଦଶଟି କାନ୍ଥ ଅଛି; ପ୍ରତ୍ୟେକଟି ଲମ୍ବଭାବରେ ନିର୍ମିତ ଓ ତନ୍ମଧ୍ୟବର୍ତ୍ତୀ ଦୁଇ ଫୁଟ ସ୍ଥାନ ଆବର୍ଜନାରେ ପୂର୍ଣ୍ଣ । ବାହାର ପାଖର ପାରେଟ୍ କାନ୍ଥ ଭିତର ଅପେକ୍ଷା ୫ ଫୁଟ ଉଚ୍ଚ ଥିବାରୁ ଅଧାକାନ୍ଥୀ (Parapet)ର କାର୍ଯ୍ୟ କରୁଅଛି । ଏଥିରେ ଖଣ୍ଡିଏ ଲେଖାଏଁ ପଥର ଅଛି । ପ୍ରବେଶଦ୍ୱାରରେ ତିନୋଟି ଲେଖାଏଁ ଫାଟକ ପ୍ରତିବନ୍ଧକ ସ୍ୱରୂପ ଅଛି । ଏହା ଅତି ସୁଦୃଢ଼ । ଯଦି ସାହସୀ ଲୋକେ ଏହା ରକ୍ଷା କରନ୍ତି, ତେବେ ଏହା ମଧ୍ୟରେ ପ୍ରବେଶ କରିବା ଏକାନ୍ତ ଅସମ୍ଭବ । ଏହା ଭିତରେ ପ୍ରଶସ୍ତ ଓ ଅପ୍ରଶସ୍ତ ଉଭୟବିଧ ପଥ ଅଛି । ପ୍ରତ୍ୟେକ ପାର୍ଶ୍ୱରେ ୪୦ ଫୁଟ ଉଚ୍ଚ ପଥରକାନ୍ଥ ଅଛି । ସେଠାରେ ଥାଇ ଯଦି ବଡ଼ ବଡ଼ ପଥର ନିକ୍ଷେପ କରି ହୁଏ, ତେବେ ତଳ ରାସ୍ତାର ସମସ୍ତ ଲୋକେ ପେଷି ହୋଇଯିବେ । କୌଣସି ୟୁରୋପୀୟ ସେନାର ଅବରୋଧରେ ବହୁକାଳ ଆତ୍ମରକ୍ଷା କରିବା ନିମିତ୍ତ ଏହି ଦୁର୍ଗଟି ଅତିଶୟ କ୍ଷୁଦ୍ର ଅଟେ ।

ମିଷ୍ଟର ଚାର୍ଲସ ଏଲେନ (Mr. Charles Alleyn) ନାମକ ଜଣେ ଭଦ୍ରଲୋକଙ୍କ ସହିତ ମୋର ଏଠାରେ ସାକ୍ଷାତ୍ ହେଲା । ସେ କଟକ ଓ ମାନ୍ଦ୍ରାଜର ଡାକ ଚଳାଇବା ନିମିତ୍ତ କଲିକତାର ଗଭର୍ଣ୍ଣମେଣ୍ଟ ଦ୍ୱାରା

ନିଯୁକ୍ତ ହୋଇଥିଲେ । ଓଡ଼ିଶାର ଗଭର୍ଣ୍ଣର ଭବାନୀ ପଣ୍ଡିତଙ୍କୁ ସାକ୍ଷାତ୍ କରିବାକୁ ଦରବାର ଅଭିମୁଖରେ ଯାଉଁଯାଉଁ ବାଟରେ ତାଙ୍କ ସହିତ ଭେଟ ହେଲି । ଦରବାରରେ ରାଜକୀୟ ଶିଷ୍ଟାଚାର, ସୀମାତିରିକ୍ତ ଅଭ୍ୟର୍ଥନା ପାଇଥିଲି । ତତ୍ପରେ ଗଭର୍ଣ୍ଣରଙ୍କୁ ଲର୍ଡ କ୍ଲାଇବଙ୍କର ପତ୍ର ଦେଇଥିଲି । ମୁଁ ଯେ ମହାମହିମଙ୍କର ବିଶ୍ୱାସୀ ଅଟେଁ, ଏ ପତ୍ରରେ ତାହା ଉଲ୍ଲେଖ ଥିଲା । ତେଣୁ ମୋର ସମସ୍ତ କଥାରେ ମନୋଯୋଗୀ ହେବା ପାଇଁ ତାଙ୍କୁ ଅନୁରୋଧ କରାଯାଇଥିଲା । ସମ୍ବଲପୁର ସହିତ ହୀରକ ବ୍ୟବସାୟ ଓ କେବଳ ସେହି ଅଭିପ୍ରାୟରେ ମୁଁ ଯେ ସେଠାକୁ ଯାଉଅଛି, ଏହା କହି ମୁଁ ତାଙ୍କ ସହିତ ପ୍ରଥମ ଆଳାପ କଲି । ମାତ୍ର ସେ ମୋତେ ସୂକ୍ଷ୍ମ ଦୃଷ୍ଟି ସହକାରେ ନିରୀକ୍ଷଣ କରି କହିଲେ ଯେ, ମହାମହିମଙ୍କ ପତ୍ରରେ ଏହି ସାମାନ୍ୟ କଥାର ଅର୍ଥ ନିହିତ ଥାଇ ନ ପାରେ ଓ ମୋ ଭଳି ଲୋକର କେବଳ ଏତିକ ଅଭିପ୍ରାୟ ନୁହେଁ; କାରଣ ସମ୍ବଲପୁର ସହିତ ହୀରକ ବ୍ୟବସାୟ ଚାଳିତ ହେବା ଏକାନ୍ତ ଅସମ୍ଭବ । ତାଙ୍କର ସନ୍ଦେହ ହେଲା ଯେ, ମୁଁ ପାର୍ବତୀୟ ଲୋକମାନଙ୍କ ସହିତ ଏକତା ସ୍ଥାପନ କରିବା ନିମିତ୍ତ ନିଯୁକ୍ତ ହୋଇଅଛି । ସେ ମୋତେ ବୁଝାଇଦେଲେ ଯେ, ତାଙ୍କର ମାଲିକ **ଜାନୋଜି**ଙ୍କର ବଙ୍ଗ ଓ ବିହାରର ବାକି କର ବାବଦକୁ କେତେ ପାଉଣା ଅଛି । ଏହି ଶୁଭ ଆରମ୍ଭର ସୁଯୋଗ ପାଇ ତାହାର ଆଲୋଚନା କରିବାରେ ପ୍ରବୃତ୍ତ ହୋଇ ଉତ୍ତର ଦେଲି—"ମୁଁ ଜାଣେ ଯେ, ଜନୋଚିତ ପ୍ରତିଦାନର କର ପରିବର୍ତ୍ତରେ ଓଡ଼ିଶାର କର ଜାନୋଜିଙ୍କୁ ଛାଡ଼ି ଦିଆ ଯାଇଅଛି । ଏପରି ଅବସ୍ଥାରେ ଏହି ପ୍ରଦେଶ ଇଂରେଜ କମ୍ପାନିଙ୍କ ହସ୍ତରେ ଅର୍ପଣ କରିବା ସର୍ବଶ୍ରେଷ୍ଠ ଉପାୟ । ଏହା ହେଲେ ସେମାନେ ପ୍ରଭୂତ ଅର୍ଥ ଦେବେ ଓ ନାଗପୁର ଦରବାରରେ ଜଣେ ରେସିଡେଣ୍ଟ ରହି ଏହି ସନ୍ଧିର ସର୍ତ୍ତ ରକ୍ଷା କରିବା ସକାଶେ ଜାମିନ ରହିବେ ।" ତାଙ୍କୁ ଉତ୍ସାହିତ କରିବା ଅଭିପ୍ରାୟରେ ମୁଁ କହିଲି ଯେ, ଏହାଦ୍ୱାରା ନାଗପୁର ଦରବାର ଓ କଲିକତାର ଗଭର୍ଣ୍ଣମେଣ୍ଟ ଉଭୟଙ୍କ ମଧ୍ୟରେ ପରସ୍ପର ବିଶ୍ୱାସ ବର୍ଦ୍ଧିତ ହେବା ସଙ୍ଗେ ସଙ୍ଗେ ଉଭୟଙ୍କର ବହୁ ଉପକାର ସାଧିତ ହେବ ।

ସେ ସମୟରେ ଜାନୋଜିଙ୍କର ଅବସ୍ଥା ଅତି ଶୋଚନୀୟ ହୋଇଥିଲା । ପେଶବା ମାଧୋରାଓଙ୍କ ସହିତ ତାଙ୍କର ଘୋର ମନୋମାଳିନ୍ୟ ଘଟିଥିଲା ଓ ବିଗତ ଯୁଦ୍ଧଯାତ୍ରାରେ ବିଶ୍ୱାସଘାତକତା ହେତୁ ଏକମାତ୍ର ମିତ୍ର ଦାକ୍ଷିଣାତ୍ୟର ନିଜାମଙ୍କ ଠାରେ ସେ ଘୃଣାର ପାତ୍ର ହୋଇଥିଲେ ଓ ନିଜେ ପେଶବା ଗୁରୁତର ଅସନ୍ତୋଷଜନିତ ପ୍ରତିଫଳ ଦେବା ପାଇଁ କୃତସଙ୍କଳ୍ପ ହୋଇଥିଲେ । ଇଂରେଜମାନଙ୍କ ସହିତ ମିତ୍ରତା ସଂସ୍ଥାପିତ ହେଲେ ଯେ ସୁଫଳ ଅବଶ୍ୟମ୍ଭାବୀ, ତାହା ଭବାନୀ ପଣ୍ଡିତଙ୍କ ସଦୃଶ ବିଚକ୍ଷଣ ରାଜନୀତିଜ୍ଞ ପକ୍ଷରେ ହୃଦୟଙ୍ଗମ କରିବା ଅସାଧ୍ୟ ନୁହେ । ମରହଟ୍ଟାମାନଙ୍କ ଯଥୋଚିତ ବିଚକ୍ଷଣତା ସହକାରେ ସେ ମୋର ପ୍ରସ୍ତାବର ଗୁରୁତ୍ୱ ଉପଲବ୍ଧି କରିଥିଲେ । ମରହଟ୍ଟା ଦରବାରର ଓ ଆମ୍ଭର ସ୍ୱାର୍ଥର ଅଭିନ୍ନତା ସମ୍ବନ୍ଧରେ ମୋ ନିକଟରୁ ଯାହା ଶୁଣିଲେ, ତାହା ସେ ଜାନୋଜିଙ୍କୁ ଲେଖିବେ ଓ ଲର୍ଡ କ୍ଲାଇବଙ୍କୁ ତାଙ୍କର ଅଭିପ୍ରାୟ ମୁଁ ଲେଖିବି, ଏହି ଅଭିପ୍ରାୟ ସେ ମୋଠାରେ ପ୍ରକାଶ କରିଥିଲେ । କଥୋପକଥନ ଶେଷ ହେବା ପରେ ସେ ଅତ୍ୟନ୍ତ ଉତ୍‌ଫୁଲ୍ଲ ହୋଇଥିଲେ ଏବଂ ମୋତେ ଯାବତୀୟ ସାହାଯ୍ୟ ଦେବା ନିମିତ୍ତ ପ୍ରତିଶ୍ରୁତ ହୋଇ ପଥପ୍ରଦର୍ଶକ ଲୋକ ଦେଇଥିଲେ । ଉପୃରେ ଦୁର୍ଗର ପ୍ରଧାନ ସେନାପତି ଲକ୍ଷ୍ମଣଜି ଯାଟୀଙ୍କୁ ଭେଟିଥିଲି । ସେ ମୋ ପ୍ରତି ଅତିଶୟ ସମ୍ମାନ ପ୍ରଦର୍ଶନ କରିଥିଲେ ।

୧୦ ତାରିଖ ମେ—ଅଦ୍ୟ କଟକ ଛାଡ଼ି ଦେଢ଼ ମାଇଲ ଓପାର କାଠଯୋଡ଼ୀ ନଦୀ ପାର ହେଲି । ଏଠାରୁ ଯେଉଁ ଅଞ୍ଚଳକୁ ମୁଁ ଯାଇଥିଲି ତାହା ବହୁ କ୍ଷୁଦ୍ର ଜମିଦାରୀରେ ବିଭକ୍ତ ହୋଇଥିଲା । ଜମିଦାରମାନେ କଟକରେ ଖଜଣା ଦେଉଥିଲେ । ବାସ୍ତବ ଜମିଦାରମାନେ ପ୍ରଜାମାନଙ୍କ ଉପରେ ଘୋର ଅତ୍ୟାଚାର କରୁଥିଲେ ଓ ସୈନିକ ଲୋକ ପଠାଇ ଘର ଘର ଲୁଣ୍ଠନ କରୁଥିଲେ । ଏହି ହେତୁରୁ ଏ ଅଞ୍ଚଳରେ ଅତି ଅଳ୍ପ ବସତି ଦୃଷ୍ଟ ହେଲା । ପାଞ୍ଚ ମାଇଲ ଦୀର୍ଘ ସାମାନ୍ୟ ଜଙ୍ଗଲ ପାର ହେବା ପରେ

ମହାନଦୀକୂଳରେ ଉପଗତ ହେବାକୁ ହୁଏ । କାଠଯୋଡ଼ି ଓ ମହାନଦୀର ମଧ୍ୟବର୍ତ୍ତୀ ସଙ୍କୀର୍ଣ୍ଣ ପଠା ଉପରେ ଆଠଗଡ଼ ଦୁର୍ଗ ଅବସ୍ଥିତ । ଏହାର ଚତୁର୍ଦ୍ଦିଗରେ ଗଡ଼ଖାଇ ଓ ବାର୍ଦ୍ଧକ୍ୟ ବଣ ଦେଖାଯାଉଥିଲା ।

୧୧ ତାରିଖ ମେ :—ନଦୀକୂଳରେ ଗୃହ ମାଇଲ ଗଲେ ଗୋଟିଏ ଘାଟି ପଡ଼େ । ଏହି ଘାଟି ନଦୀ ଭିତରକୁ ପଶିଯାଇଥିବା ଗୋଟିଏ ପାହାଡ଼ର ନାସୀ ଉପରେ ଅବସ୍ଥିତ । ଏହା ୨୦୦ ଗଜ ଲମ୍ବା, ଚିମା ପଥରରେ ପୂର୍ଣ୍ଣ । ଏହାର ଦକ୍ଷିଣ-ପଶ୍ଚିମ କୋଣରେ ଗୋଟିଏ କ୍ଷୁଦ୍ର ଛାଉଣି ହେବା ଭଳି ସୁନ୍ଦର ସ୍ଥାନ ଅଛି । ତାହାର ପୃଷ୍ଠଭାଗରେ ନଦୀ ଓ ଘାଟି, ଦକ୍ଷିଣ ଭାଗରେ ନଦୀ, ବାମ ଭାଗରେ କାନ୍ଥ ପରି ଉଠିଥିବା ପର୍ବତ ଅଛି । ଦକ୍ଷିଣ-ପଶ୍ଚିମରେ ଅତି ସୁନ୍ଦର ସମତଳ ଭୂମି ଥିବାରୁ ସେହି ବାଟେ କେବଳ ଶତ୍ରୁପ୍ରବେଶର ପଥ ଅଛି । ପାହାଡ଼ ମୂଳର ବାଟରୁ ୪ ମାଇଲ ଦୂରରେ **ଗୟଲବାଙ୍କ** (Ghilobank) ବଜାର ଅଛି । ଏହାର ଚତୁର୍ଦ୍ଦିଗରେ ବାଉଁଶ ବଣ ।

ଏଠାରେ ନଦୀଗର୍ଭରେ ଅନେକ ପଥର ରହିଅଛି । ତନ୍ମଧ୍ୟରୁ ଅଧିକାଂଶ ବନ୍ୟାକାଳରେ ବୁଡ଼ିଯାଏ । ଏଣୁ ନୌଚାଳନ ଅତ୍ୟନ୍ତ କଷ୍ଟସାଧ୍ୟ ହୁଏ । ଏହି ହେତୁରୁ ଦେଶୀୟ ଲୋକେ ବାଧ୍ୟ ହୋଇ କ୍ଷୁଦ୍ରାକାର ନୌକାରେ ବାଣିଜ୍ୟ ଚଳାଇଥାନ୍ତି । ଏହି ନୌକାଗୁଡ଼ିକ ଅତି ହାଲୁକା, ଛୋଟ ଛୋଟ ଏକ ଇଞ୍ଚ ମୋଟ ପଟାରେ ପ୍ରସ୍ତୁତ । ଏଗୁଡ଼ିକ ଚୀନ ଦେଶର ନୌକା ସଦୃଶ ନିର୍ମିତ, ତାହାର ତଳ ସମାନ ଓ ପାର୍ଶ୍ୱ ଉନ୍ନତ । ଏଥିରେ ଷାଠିଏ ମହଣରୁ ଶହେ ମହଣ ଜିନିଷ ବୋଝାଇ ହୁଏ । ମୁଁ ନିଜେ ୪୦ ଫୁଟ ଲମ୍ବ ଓ ୪ ଫୁଟ ଓସାରର ନୌକା ଦେଖିଅଛି । ବନ୍ୟା ସମୟରେ ସ୍ରୋତର ପ୍ରତିକୂଳରେ ଯିବାକୁ ହେଲେ ନିମ୍ନ ଲକ୍ଷିତ ବିଷୟଗୁଡ଼ିକ ପ୍ରତି ଦୃଷ୍ଟି ଦେଲେ ବିଶେଷ ଉପକାର ହୁଏ । ଏ ଦେଶର ପର୍ବତଗୁଡ଼ିକ ସର୍ବତ୍ର ସମଶ୍ରେଣୀରେ ଉତ୍ତର-ପଶ୍ଚିମରୁ ଦକ୍ଷିଣ-ପୂର୍ବକୁ ପ୍ରସାରିତ । ଏକ ଦିଗର ପର୍ବତ ଯେଉଁଠାରେ ପଶି ଅନ୍ୟ ଦିଗରେ

କେଉଁଠାରେ ବାହାରିଅଛି, ତାହା ଦେଖି ସେଥିରୁ ଅନୁମାନ କରି ହେବ ଯେ ନଦୀର ପାଣିଭିତରେ ନିଶ୍ଚୟ ତାହା ଲୁକ୍‌କାୟିତ ଅଛି । ଦୌଦର୍ଦ୍ଧ ଉପରକୁ ଏହି ନିୟମ ଖଟିବ ନାହିଁ । ସେ ଅଞ୍ଚଳ ପର୍ବତମୟ ଥିବାରୁ ସେଠାରେ କୌଣସି ସାଧାରଣ ନିୟମ ଲକ୍ଷିତ ହୁଏ ନାହିଁ ।

୧୨ ତାରିଖ ମେ—ଏହି ଗଯ଼ୂଲବାଙ୍କ ଘାଟିରୁ ଚାରି ମାଇଲ ଯାଇ **ବାଙ୍କି** ଜମିଦାରୀରେ ପହୁଞ୍ଚିଲୁ । ଏଠାରେ ବହୁଲୋକର ବସତି ହେତୁ କୃଷି ବିଷୟରେ ଦେଶ ଅନ୍ୟ ଆକାର ଧାରଣ କରିଅଛି । କ୍ଷୁଦ୍ର ଗ୍ରାମଗୁଡ଼ିକର ଅବସ୍ଥାନରୀତି ମୋ ଚକ୍ଷୁରେ ନୂତନ ଲାଗିଲା । ଗୋଟିଏ ପ୍ରଶସ୍ତ ରାସ୍ତା ଉପରେ ଘରଗୁଡ଼ିକ ଲଗାଲଗି ହୋଇ ନିର୍ମିତ । କେବଳ ସମ୍ମୁଖ ବ୍ୟତୀତ ଅନ୍ୟ ଦ୍ୱାର ବା ଜଳାକବାଟି ନ ଥିଲା । ଗ୍ରାମର ପ୍ରତ୍ୟେକ ମୁଣ୍ଡରେ ବଲ୍ଲିତର ଗୋଶାଳା ସଦୃଶ ଗୋଟିଏ ଲେଖାଏଁ ବାଉଁଶବେଢ଼ ଖୁଆଡ଼ ଅଛି । ଏହା ଗ୍ରାମବାସୀମାନଙ୍କର ଗବାଦି ପଶୁଗୁଡ଼ିକୁ ଶିକାର ଅନ୍ୱେଷଣକାରୀ ପାହାଡ଼ର ଭାଲୁ, ହେଟା ବାଘ ପ୍ରଭୃତି ହିଂସ୍ର-ଜନ୍ତୁମାନଙ୍କ ଠାରୁ ରାତିରେ ରକ୍ଷା କରେ । ବଡ଼ ବଡ଼ ଗ୍ରାମର ଗଠନରୀତି ଏହିପରି ନୁହେ । କାରଣ ମରହଟ୍ଟାମାନେ ଏହି ସଦର ରାସ୍ତା ଉପରେ ସୁରକ୍ଷିତ ହେବା ଭଳି କୌଣସି ଗ୍ରାମ ରଖାଇ ଦେଉ ନ ଥିଲେ ।

ଗଯ଼ୂଲବାଙ୍କଠାରୁ ଦଶ ମାଇଲ ଦୂରବର୍ତ୍ତୀ **ସିମୁଲିପୁର**(Simulpur) ଗ୍ରାମ ନିକଟରେ ଗୋଟିଏ ଶ୍ୱେତ ମର୍ମରଶିଳାର ପର୍ବତ ଦେଖାଯାଏ । ଏଠାରେ କେହି ଗୋଟିଏ ମନ୍ଦିର କରିଥିବାରୁ ସ୍ଥାନଟି ଦେବସ୍ଥଳୀ ହୋଇ-ଅଛି । ଏଠାରୁ ସୁନ୍ଦର ମର୍ମରଶିଳାର ସ୍ତର ଏଣେ ତେଣେ ଯାଇଥିବାର ସମ୍ଭବ । ଏହା ଭିତରେ ଅସଂଖ୍ୟ ବିଷାକ୍ତ ସର୍ପ ଥିବାର କିମ୍ବଦନ୍ତୀ ଥିବାରୁ ଭୟରେ କେହି ଏଠାରେ କାର୍ଯ୍ୟ କରନ୍ତି ନାହିଁ । ବାଙ୍କି ରାଜାଙ୍କୁ 'ଖାଚନ୍ଦନ' କହନ୍ତି । ସେ **ଚଢ଼ିକା**ଠାରୁ (Chadgika) ଏକକ୍ରୋଶ ଦୂରବର୍ତ୍ତୀ ବାଙ୍କି ସହରରେ ବାସ କରନ୍ତି । ମାତ୍ର ଖଜଣା ବାକି ସକାଶେ ଏହି ସମୟରେ କଟକ କାରାବାସରେ ଥିଲେ ।

ଚଣ୍ଡିକା ଗୋଟିଏ ବଡ଼ ଗ୍ରାମ, ଗୋଟିଏ ସୁନ୍ଦର ମନ୍ଦିର ସକାଶେ ବିଖ୍ୟାତ। ଏହି ମନ୍ଦିରଟି ୪୦ ଫୁଟ ଉଚ୍ଚ ଗୋଟିଏ ପାହାଡ଼ ଉପରେ ନିର୍ମିତ। ପାହାଡ଼ ଉପରକୁ ଉଠିବା ପାଇଁ ଅତି ସୁନ୍ଦର ପଥରପାହାଚ ଅଛି। ଏଠାର ମାଳି ପୂଜାରିମାନେ ମୋତେ କହିଲେ ଯେ, ସେବା ନିମିତ୍ତ ୨୦,୦୦୦ ବିଘା ଜମି ଖଞ୍ଜା ଅଛି।

ଏଠାର ମାଳିମାନେ କିପରି ବ୍ରାହ୍ମଣମାନଙ୍କଠାରୁ ରୁଦ୍ର (Roadur) ଓ ଭବାନୀଙ୍କ ସେବାର ଅଧିକାର ଛଡ଼ାଇ ନେଇଅଛନ୍ତି, ମୁଁ ଏହା କଳନା କରି ପାରିଲି ନାହିଁ। ବଙ୍ଗଦେଶରେ ଯଦି କେହି ଏପରି କରନ୍ତା, ତେବେ ବ୍ରାହ୍ମଣମାନେ ଉତ୍ତେଜିତ ହୋଇ ବହୁ ଅକଥ୍ୟ ଅଭିଶାପ ବୃଷ୍ଟି କରନ୍ତେ। ଏହା ସତ୍ୟ ଯେ, ବ୍ରାହ୍ମଣମାନେ ପ୍ରଥମତଃ ଆପଣା ଜାତିଭିତରେ ପୌରହିତ୍ୟ କର୍ମ ନିବଦ୍ଧ ରଖିଥିଲେ। ପୌରୋହିତ୍ୟ ଗୋଟିଏ ଲାଭଜନକ ବ୍ୟବସାୟ, କାରଣ ପୂଜକମାନେ ସର୍ବଦା ଦେବୋତ୍ତର ନିଷ୍କର ଭୂମି ଭୋଗ କରନ୍ତି। ଏପରି ସ୍ଥଳରେ ବ୍ରାହ୍ମଣ ପୂଜକ ଭିନ୍ନ ଅନ୍ୟ ଲୋକ ଏହି ସୁଯୋଗର ଅଂଶୀଦାର ହୋଇଥିବା ଦେଖି ମୁଁ ଅବାକ୍ ହୋଇଥିଲି। ଜଣେ ବ୍ରାହ୍ମଣ ପଣ୍ଡିତଙ୍କୁ ପଚାରିବାରେ ସେ କହିଲେ ଯେ, ରୁଦ୍ର ଓ ତାଙ୍କର ପତ୍ନୀ ବଡ଼ ସନ୍ଦେହମନା ଓ ତାଙ୍କର ସେବାରେ ବିନ୍ଦୁମାତ୍ର ତ୍ରୁଟି ହେଲେ ଭୀଷଣ ଶାସ୍ତି ଦିଅନ୍ତି। ଏଣୁ ବ୍ରାହ୍ମଣ-ମାନେ ତାଙ୍କର ସେବା ପ୍ରତି ମନ ନ ବଳାଇ ସେ ସବୁ ଛାଡ଼ି ଦେଇ କେବଳ କୃଷ୍ଣ (Kishnu) ଓ ତାଙ୍କ ପତ୍ନୀଙ୍କ ସେବା ନିଜ ସକାଶେ ରଖିଅଛନ୍ତି। ଏହା କଦାଚିତ୍ ସମ୍ଭବ। କାରଣ ହିନ୍ଦୁମାନେ ଦେବୋ-ପାସକ ହେଉ ଭକ୍ତି ଅପେକ୍ଷା ଭୟରେ ଅଧିକ ପ୍ରଣୋଦିତ ହୋଇ ଦେବତାଙ୍କୁ ଅପ୍ରୀତିକର ପୂଜା ଅର୍ପଣ ନ କରି ଯହିଁରେ ନିଜର ମଙ୍ଗଳ ହେବ, ସେପରି ପୂଜା କରିଥାନ୍ତି। ବିଷ୍ଣୁଙ୍କ (Wistnu) ସେବା ଅପେକ୍ଷା ରୁଦ୍ରଙ୍କ ସେବା ବିଶେଷ ଲାଭଜନକ। ଏ ଦେଶରେ ବ୍ରାହ୍ମଣ-ମାନେ ପରିଶ୍ରମହୀନ ଜୀବିକାର୍ଜନର ଉପାୟ ହରାଇ ବଙ୍ଗଳାର ବ୍ରାହ୍ମଣମାନଙ୍କ ଅପେକ୍ଷା ଏତେ ଅଶିକ୍ଷିତ। ଏହା ମଧ୍ୟ ସେମାନଙ୍କ ଧର୍ମ ଉପରେ କାର୍ଯ୍ୟ

କରିଅଛୁ । ତେଣୁ ତାହାର ପରିଚାଳନା କରିବା ପାଇଁ ସେମାନେ ତେତେ କଠୋର ନୁହନ୍ତି ।

୧୩ ତାରିଖ ମେ—ନଦୀର ଅପର କୂଳରେ ଓ ବାଙ୍କିର ବିପରୀତ ପାର୍ଶ୍ୱରେ **ତିଗିରିଆ** ଚଳିଲୁ । ସେଠାର ରାଜାଙ୍କୁ ଚମ୍ପତ ସିଂହ କହନ୍ତି । ରାଜ୍ୟରେ ଶାନ୍ତିରକ୍ଷା କରି ରାଜ୍ୟର ଉନ୍ନତି କରିବା ନିମିତ୍ତ ଏହି ରାଜାଙ୍କୁ ବହୁ ଆୟାସ କରିବାକୁ ପଡ଼ିଥିଲା । **ବଡ଼ମ୍ବା ଓ ଢେଙ୍କାନାଳ** ଜମିଦାରୀ ଗୁଡ଼ିକରୁ କର ଆଦାୟ ନ ହେବାରୁ ଶିବଭଞ୍ଜ ସେଗୁଡ଼ିକ ଆକ୍ରମଣ କଲାବେଳେ ସେ ଦୁଇରାଜ୍ୟର ତନ୍ତୀ ରୟତମାନେ ରାଜ୍ୟ ଛାଡ଼ି ପଳାଇଲେ । ଏମାନଙ୍କୁ ଚମ୍ପତ ସିଂହ ନିଜ ରାଜ୍ୟକୁ ଡାକି ନେଇ **ନୂଆ ପାଟଣା** ନାମକ ଗ୍ରାମ ସେମାନଙ୍କୁ ଦାନ କଲେ । ଏହିପରି ନାନାରୂପ ସୁବିଧା ଦେଇ ସେ ଶିଳ୍ପୀମାନଙ୍କୁ ଉତ୍ସାହିତ କରୁଅଛନ୍ତି । ଯଦି ମରହଟ୍ଟା-ମାନଙ୍କ ଦ୍ୱାରା ସେ ସ୍ଥାନଟିର ମୂଲୋତ୍ପାଟନ ନ ହୁଏ ତେବେ ତାହା ଗୋଟିଏ ସମୃଦ୍ଧ ଶିଳ୍ପବାଣିଜ୍ୟସ୍ଥଳୀରୂପେ ଯେ ପରିଗଣିତ ହେବ, ତାହାର ସୂଚନା ଦେଖାଯାଉଅଛି । ତିଗିରିଆର ଉତ୍ତରପ୍ରାନ୍ତବର୍ତ୍ତୀ ଢେଙ୍କାନାଳ ଗୋଟିଏ ବୃହତ୍ ରାଜ୍ୟ । ତିଗିରିଆର ପଶ୍ଚିମରେ ଅବସ୍ଥିତ ବଡ଼ମ୍ବା ଗୋଟିଏ କ୍ଷୁଦ୍ର ରାଜ୍ୟ । ଏହା ବାଙ୍କିର ପଶ୍ଚିମାଂଶର ବିପରୀତ ଦିଗରେ ମହାନଦୀ କୂଳରେ ଅବସ୍ଥିତ । ଏହି ରାଜ୍ୟରେ **ମାଣିଆବନ୍ଧ** ବଜାର । ଏହା ପୂର୍ବେ ଗୋଟିଏ ପ୍ରସିଦ୍ଧ ବାଣିଜ୍ୟସ୍ଥଳୀ ଥିଲା, ମାତ୍ର ବର୍ତ୍ତମାନ ଏକାବେଳକେ ନଷ୍ଟ ହୋଇଅଛି ।

ନଦୀକୂଳ ଅତି ରମଣୀୟ ସ୍ଥାନ, ତାହା ଅତିକ୍ରମ କରି **ବୈଦ୍ୟେଶ୍ୱର** (Bidissur)ରେ ପହଞ୍ଚିଲୁ । ଏହା ଗୋଟିଏ ବୃହତ୍ ଗ୍ରାମ, ଗୋଟିଏ ଉଚ୍ଚ ପାହାଡ଼ର ମୂଳଦେଶରେ ଅବସ୍ଥିତ । ସେହି ପାହାଡ଼ର ଶିଖରଦେଶରେ ଏକ ସମତଳ ଭୂମି ଉପରେ ଗୋଟିଏ ଆମ୍ବ ବଗିଚା ଅଛି । ବିପଦ ସମୟରେ ଗ୍ରାମବାସୀମାନେ ମାଲମତା ନେଇ ତା

ଉପରକୁ ଚଳାଇ ଯାଆନ୍ତି । ମୁଁ ଯେଉଁ ସବୁ ପାହାଡ଼ ଅତିକ୍ରମ କରି ଆସିଥିଲି, ସେଗୁଡ଼ିକ ଏହି ପାହାଡ଼ର ତୁଳନାରେ ଢାଇଟିଳସି ସମାନ ମନେ ହେଲା । ଏହାର ପାର୍ଶ୍ୱଦେଶ ୭୦ ଡିଗ୍ରୀ କୋଣ ଉପରେ ଉଠିଯାଇଛି ବଳ । ମୁଁ ଉପରକୁ ଯିବାର ଇଚ୍ଛା କରିବାରୁ ସ୍ଥାନୀୟ ମୁଖ୍ୟବ୍ୟକ୍ତିମାନେ ବାରଣ କଲେ । ସଡକ ସଡ ମୟୁର ଶିକାର ପାଇଁ ଯେଉଁ ବାଟ ଉଠିଥିଲି, ସେଥିରେ ଏତେ କଣ୍ଟା ଥିଲା ଯେ, ମୋର ଫତେଇ ଓ କାମିଜର ପଛଆଡ଼ ଛିଣ୍ଡି ଯାଇଥିଲା । ମୋର ଅଜଣା ଆଉ ଗୋଟିଏ ବାଟ ଥିବାର ଅନୁମାନ । ଏହି ପର୍ବତରେ ଗୋଟିଏ ଘାଟି ଅଛି । ଗୋଟିଏ ପାହାଡ଼ିଆ ନଦୀ ଯୋଗୁଁ ତାହା ଆହୁରି ଦୁରତିକ୍ରମ ହୋଇଅଛି । ଏହି ନଦୀଟି ପର୍ବତର ପଶ୍ଚିମଦିଗର ପାଦଦେଶରେ ପ୍ରବାହିତ ହୋଇ ମହାନଦୀରେ ପଡ଼ିଅଛି । ସେଥିରେ ଖରାଦିନେ ମଧ୍ୟ ପହଁରା ପାଣି ଥାଏ । ମୁଁ ଅଗତ୍ୟା ଏହା ପାର ହେବାପାଇଁ ହୋମହାଣି ପର୍ଯ୍ୟନ୍ତ ଉତ୍ତରଦିଗକୁ ଗତି କଲି । ପୁନର୍ବାର ନଦୀ ପାର ହୋଇ କୂଳକୁ ଉଠିଥିଲି । ନଦୀରେ ଉଚ୍ଚ ପାଣି ଥିଲାବେଳେ ଏହି ଘାଟିଟି ବଡ ବିପଜ୍ଜନକ ହେଉଥିବ ।

ଏହି ପର୍ବତର ବିପରୀତ ଦିଗରେ ନଦୀଗର୍ଭରେ ଗୋଟିଏ ମନୋହର ଦ୍ୱୀପ ଅଛି । ତାହାର ପଶ୍ଚିମ ଦିଗରେ ବିଷମାକାର ୩୦ ଫୁଟ ଉଚ୍ଚ ଗୋଟିଏ ପାହାଡ଼ ଅଛି । ଏହାଦ୍ୱାରା ନଦୀର ସ୍ରୋତ ପ୍ରତିହତ, ସ୍ରୋତର ଧ୍ୱନି ପ୍ରତିଧ୍ୱନିତ ଓ ଦ୍ୱୀପଟିର ଅସ୍ତିତ୍ୱ ରକ୍ଷିତ ହୁଏ । ଦ୍ୱୀପଟିର ଅବଶିଷ୍ଟ ଅଂଶରେ ୬୦୦ ଗଜ ଦୀର୍ଘ ଓ ୩୦୦ ଗଜ ପ୍ରସ୍ଥ ଗୋଟିଏ ବୃହତ୍ ବଗିଚା ଅଛି । ନଦୀ ଜଳପୂର୍ଣ୍ଣ ଥିବାବେଳେ ଏହି ସ୍ଥାନଟି ପୃଥିବୀ ମଧ୍ୟରେ ଗୋଟିଏ ଅତି ରମଣୀୟ ସ୍ଥାନ ହେଉଥିବ ।

ବୈଦ୍ୟେଶ୍ୱରଠାରୁ ୫ ମାଇଲଯାଏଁ ବାଙ୍କି ରାଜ୍ୟ ବିସ୍ତୃତ । ତତ୍ପରେ **ଖଣ୍ଡପଡ଼ା** ଚକଲା ପଡ଼େ । **କଣ୍ଟିଲୋ** ଠାରୁ (Coolloo) ତିନକୋଶ ଦକ୍ଷିଣ-ପଶ୍ଚିମ ଦିଗରେ ଖଣ୍ଡପଡ଼ା ଗଡ଼ ଅବସ୍ଥିତ । ଭୃତ୍ୟମାନଙ୍କର ପ୍ରୟୋଜନୀୟ ଦ୍ରବ୍ୟାଦି ସଂଗ୍ରହ ନିମିତ୍ତ କଣ୍ଟିଲୋଠାରେ ଦୁଇ ଦିନ ବିଶ୍ରାମ ନେଇଥିଲି । କାରଣ ମୁଁ ଜାଣିଥିଲି ଯେ, ଏଣିକ ଯେଉଁ ରାଜ୍ୟ ଭିତରେ

ଯିବ, ସେଠାରେ ଗ୍ରାମ ଅପେକ୍ଷା ପର୍ବତ ଅଧିକ । ଆବାଦୀ ଜମି ଅତି ସାମାନ୍ୟ, ବହୁ ଆଦିମଲୋକର ବସତି ଥିବାରୁ ଅନ୍ୟତ କିଛି ଖାଦ୍ୟ ଦ୍ରବ୍ୟ ମିଳନ୍ତା ନାହିଁ ।

କଣ୍ଟିଲୋ ଗୋଟିଏ ବୃହତ୍ ଗ୍ରାମ । ଏହି ସଦର ରାସ୍ତାରେ ଏହା ଏକ ବିଖ୍ୟାତ ବାଣିଜ୍ୟସ୍ଥଳୀ । **ବେରାର ଓ ମଧ୍ୟ-ଭାରତର** ବଣିକମାନେ ତୁଳା ଓ ଅନ୍ୟାନ୍ୟ ଦ୍ରବ୍ୟ ଏଠାକୁ ଆଣନ୍ତି ଓ ବଦଳରେ ଲୁଣ ଘେନି ଫେରନ୍ତି । ଚିଲ୍କାର **କଣ୍ଟର ବି•** (Cunter Bi) ଓ ତାହାର ଦକ୍ଷିଣବର୍ତ୍ତୀ ଅଞ୍ଚଳରେ ଏହି ପ୍ରକାର ବ୍ୟବହୃତ ଲୁଣ ପ୍ରସ୍ତୁତ ହୁଏ । ରକ୍ଷଣଶୀଳ ହିନ୍ଦୁମାନେ ନୀଚଜାତିର ଲୋକଙ୍କଦ୍ୱାରା ପ୍ରସ୍ତୁତ ଲୁଣ ଖାଇଲେ ଅପବିତ୍ର ହେବାର ଆଶଙ୍କା କରନ୍ତି । ଇଂରେଜପର ମେଳା (fair) ରୀତିରେ କଣ୍ଟିଲୋର ବାଣିଜ୍ୟ ଚଳିତ ହୁଏ । ଏହାଦ୍ୱାରା କ୍ରୟବିକ୍ରୟକାରୀ ବଣିକମାନଙ୍କର ଧନାଗମ ହୋଇଥାଏ । ଜାନୁଆରୀ, ଫେବୃଆରୀ, ମାର୍ଚ୍ଚ ଓ ଏପ୍ରିଲ ଏହି ଚାରି ମାସରେ ମଧ୍ୟଦେଶୀୟ ହିନ୍ଦୁସ୍ଥାନୀ ବଣିକମାନେ ପଣ୍ୟଦ୍ରବ୍ୟ ଅପହୃତ ନ ହେବା ନିମିତ୍ତ ଦଳବଦ୍ଧ ହୋଇ ଏଠାକୁ ଆସନ୍ତି । ଏଠାରେ ସମୁଦ୍ର-କୂଳବାସୀ ଲୁଣର ଓ ଇଂରେଜୀୟ ଦ୍ରବ୍ୟାଦିର ବ୍ୟବସାୟୀମାନଙ୍କ ସହିତ ସେମାନଙ୍କର ଦେଖା ସାକ୍ଷାତ ହୁଏ । ବିନିମୟଦ୍ୱାରା ବ୍ୟବସାୟ ଚଳିତ ହେଉଥିବାରୁ ସ୍ୱଳ୍ପ ଅର୍ଥର ବ୍ୟବହାର ହେଉଥାଏ । ରହିବାପାଇଁ ଦଲ୍ଲାଲମାନେ ସେମାନଙ୍କୁ ଗୋଟିଏ ଗୋଟିଏ କୁଡ଼ିଆ ଘର ଦିଅନ୍ତି ଓ ଉଚିତ ମୂଲ୍ୟରେ ସେମାନଙ୍କର ପ୍ରୟୋଜନୀୟ ଖାଦ୍ୟ ସାମଗ୍ରୀ ଓ ଅନ୍ୟାନ୍ୟ ଦ୍ରବ୍ୟ [illegible]ଯୋଗାଇଥାଆନ୍ତି । ଏହି ପରିଶ୍ରମ ନିମିତ୍ତ ଦଲ୍ଲାଲମାନେ ଶତକରା ଟଙ୍କାଏ [illegible]ଭରେ ପାଉଣା ପାଆନ୍ତି । ବର୍ଷା ଆରମ୍ଭ ହେବାର ମାସକ ଆଗରୁ ସ[illegible]ଲି ଯାଆନ୍ତି । କେବଳ ଧନହୀନ ଦଲ୍ଲାଲମାନେ ଏ ସ୍ଥାନରେ [illegible]ଧି କରି ରହନ୍ତି । ଏହି ଅବସ୍ଥାରେ ମୁଁ ଏ ସ୍ଥାନ ଦେଖିଥିଲି । ଏହି [illegible]ଦେଶର ଲୋକମାନେ ୫।୬ ଶତ ମାଇଲ ଦୂରବର୍ତ୍ତୀ ସ୍ଥାନରୁ ଆସୁଥିଲେ

---

Cunterbi ର ଓଡ଼ିଆ ନାମ **ଭନ୍ତଳବାଇ** । କୃଷ୍ଣପୁର ରେଲ ଷ୍ଟେସନରୁ ଅଳ୍ପ ଦୂରରେ ଏହି ଗ୍ରାମଟି ଅବସ୍ଥିତ । ଏଠାରେ ଅଳ୍ପକାଳ ପାଇଁ ଖୋର୍ଦ୍ଧା ରଜାଙ୍କର ଗଡ଼ ଥିଲା ଓ ସାକ୍ଷୀଗୋପାଳ ମୂର୍ତ୍ତି ପ୍ରକଟ ହୋଇଥିଲା । ଏହା ଲୁଣ କାରବାରର ପେଣ୍ଠ ଥିଲା । ଲୁଣ ମହାଜନମାନଙ୍କର ବଂଶଧରମାନେ ଅଦ୍ୟାପି ଏଠାରେ ଅଛନ୍ତି ।

ମଧ୍ୟ ଆଉ ୧୨୦ ମାଇଲ ଦୂରବର୍ତ୍ତୀ ସମୁଦ୍ରଯାଏ ଯିବାପାଇଁ ଆଦୌ ସାହସ କରନ୍ତି ନାହିଁ । ଏହାର କାରଣ ମୁଁ ଅନୁମାନ କରୁଅଛି ଯେ ଲୁଣ୍ଠା ହାଉଆର ଅପକାରିତାକୁ ସେମାନେ ଅତିଶୟ ଭୟ କରନ୍ତି ।

୧୨ ତାରିଖ ମେ—ଏହି ସ୍ଥାନର ବିପରୀତ ଦିଗରେ ନଦୀର ଅପରପାରରେ **ନରସିଂହପୁର** Nersingpoor) କଣ୍ଟା; ସେଠାରୁ ୩ କ୍ରୋଶ ଦୂରରେ ନରସିଂହପୁର ଗଡ଼ । ଏହାର ଉତ୍ତରକୁ **ତାଳଚେର** (Talchoir) ଓ **ହିନ୍ଦୋଳ** (Hindole) । ସେଠାରୁ ବିଶେଷତଃ ତାଳଚେର ଚକଲ୍ଲର **ଗୁରୁଜଙ୍ଗ** (Goor an ) ଓ **ରଡ଼ପଙ୍ଗ** ( Rodpong ) ପାହାଡ଼ରୁ ଉତ୍କୃଷ୍ଟ ପାଲିଙ୍କି-ବାଉଁଶ ଆସେ । ସେ ବାଉଁଶ ପାହାଡ଼ର ଶିଖରଦେଶରେ ଜନ୍ମେ । ଜୁଲାଇ ମାସରେ ତାହାର ଗଜା ବାହାରେ । ଯେଉଁମାନେ ଏହା ତିଆରି କରି ଜାଣନ୍ତି, ସେମାନେ ଝାଡ଼ର ଶ୍ରେଷ୍ଠ ଗଜା ବାଛି ମାଟିରେ ପୋତା ହୋଇଥିବା ଖୁଣ୍ଟରେ ବାନ୍ଧି ତାହାର ବଢ଼ିବା ଶକ୍ତିକୁ ଇଚ୍ଛାନୁସାରେ ବଢ଼ାଇ ଠିକ ଆକାରରେ ପରିଣତ କରନ୍ତି । ଏହି ପ୍ରକାରରେ ଏହା ୨୦ ଗଜ ପର୍ଯ୍ୟନ୍ତ ବଢ଼େ । ଖରାଦିନ ଆରମ୍ଭ ହେଲେ ତାହାର ଅଗ କାଟି ପକାନ୍ତି ଓ ପରେ ବଜାରକୁ ପଠାଇ ଦିଅନ୍ତି । ଅଧିକ ଦିନ ରଖା ହେଲେ ପୋଲ ବଢ଼ି ଯାଇ ବାଉଁଶ ପାତଳା ହେଉଥିବାରୁ ତାହା କାର୍ଯ୍ୟରେ ଲାଗେ ନାହିଁ । ମୋର ବିଶ୍ୱାସ ଯେ, ବାଉଁଶ ପରି ଅନ୍ୟ କୌଣସି ଗଛ ଏତେ ଶୀଘ୍ର ବଢ଼େ ନାହିଁ; ଏହା ପାଞ୍ଚ ମାସ ଭିତରେ ୨୦ ଗଜ ଲମ୍ବା ଓ ୯ ଇଞ୍ଚ ମୋଟା ହୁଏ ।

କଣ୍ଟିଲୋଠାରୁ ୩ ମାଇଲ ଗଲେ ଗୋଟିଏ ପାହାଡ଼ ପଡ଼େ । [illegible] ଠିକ ତଳେ ରାସ୍ତା ଯାଇଅଛି । ରାସ୍ତାର ଡାହାଣକୁ ନଦୀ ବହୁଛି [illegible] ଏଠାରେ ରାସ୍ତାଟି କେବଳ ୬୪ ଗଜ ଚଉଡ଼ା, ମାତ୍ର ଅନ୍ୟାନ୍ୟ ଘାଟି ପରି ଢିମା ପଥରରେ ପୂର୍ଣ୍ଣ ନୁହେଁ । ଏହି ସ୍ଥାନଠାରୁ ଅତି ଅଳ୍ପ ଲୋକାଳୟ ଓ ବହୁ ବନାକୀର୍ଣ୍ଣ ଦେଶ ଦୃଷ୍ଟି ହୁଏ ।

କଣ୍ଟିଲ୍ଲୋଠାରୁ ୧୬ ମାଇଲ ଯାଇ **ଦଶପଲ୍ଲା** (Dusspulla) ଜିଲ୍ଲାରେ ପହଞ୍ଚ **ବୈଲପଡ଼ା**ଠାରେ (Bailpara) ଉପସ୍ଥିତ ହେଲ । ଏଠାରେ ପଥିକମାନଙ୍କଠାରୁ **ବଡ଼ମୂଳ ଘାଟି** (Strait) ପାର ହେବା ପାଇଁ ରଜାଙ୍କ ଦ୍ୱାର କର ଗୃହୀତ ହୁଏ । ବଡ଼ମୂଳ ଘାଟି ୧୪ ମାଇଲ ଲମ୍ବା । ଏଣୁ କୌଣସି ଲୋକ ଅବାଧ ହେଲେ ଏଠାର ରଜକର୍ମଚାରୀ ଶନ୍ତ୍ ଆଗମନର ପ୍ରତୀକ୍ଷାରେ ରହିବାପାଇଁ ବଡ଼ମୂଳଠାରେ ଥିବା ଲୋକମାନଙ୍କୁ ଖବର ଦେବାର ସମୟ ପାଆନ୍ତି । ଏଲ୍ଲାହାବାଦ ଅଧିବାସୀ **ସମ୍ରାଟ ସାହାଆଲମ**ଙ୍କର ଆଦେଶପତ୍ର ନ ଦେଖାଇବା ପର୍ଯ୍ୟନ୍ତ ମୋ ସହିତ କପଟ ବ୍ୟବହାର କରିବାକୁ ହେବ, ତାହା ଏଠାକାର ସେନାପତି ଜାଣି ନ ଥିଲ । ଏହାକୁ ସେ କି ପ୍ରକାର ଗ୍ରହଣ କଲ, ତାହା ଦେଖି ମୁଁ ବିସ୍ମିତ ହୋଇଥିଲ । ତୈମୁରକୁଳସମ୍ଭବ ସମ୍ରାଟମାନେ ଏ ଦେଶର ରଜ୍ୟାଧିକାର ଏକଶତ ବର୍ଷ ପୂର୍ବେ ହରଇଥିଲେ ମଧ୍ୟ ଏପର୍ଯ୍ୟନ୍ତ ଲୋକମାନଙ୍କର ପରମ୍ପରକ୍ରମେ ଭକ୍ତିର ପାତ୍ର ହୋଇ ଆସୁଅଛନ୍ତି । ସେ ମଧ୍ୟ ଲର୍ଡ କ୍ଲାଇବଙ୍କ ପ୍ରତି ପ୍ରଭ ମନୋଯୋଗୀ ହୋଇଥିଲ୍ଲ, କାରଣ ସେ ସମୟରେ ଲର୍ଡ କ୍ଲାଇବଙ୍କ ଯଶ ସର୍ବତ୍ର ପ୍ରଚରିତ ହୋଇଥିଲ୍ଲ । ମାତ୍ର ଯେତେବେଳେ ଭବାନୀ ପଣ୍ଡିତଙ୍କ ପ୍ରଦତ୍ତ ମରହଟ୍ଟା ଛଡ଼ପତ୍ର ଦେଖାଇଲ, ଓାହା ହସି ଉଡ଼ାଇ ଦେଇ କହିଲ୍ଲ ଯେ, ମରହଟ୍ଟାମାନେ ଯେତେବେଳେ ଏହି ବାଟରେ ଯାଆନ୍ତି, ସେମାନେ ମଧ୍ୟ ତାହାକୁ ଭେଟି ଦେଇ ଯାଆନ୍ତି । ସେ ହଠାତ୍ ତର୍ଜନ ଗର୍ଜନ କରି କଟକର ପାଉଣା ସକାଶେ ବହୁ ଅର୍ଥ ଦାବି କରି ବସିଲ୍ଲ । ମାତ୍ର ତାହାର କଥାରେ ପ୍ରତି ମୁହୂର୍ତ୍ତି ପରିବର୍ତ୍ତନ ଲକ୍ଷ୍ୟ କରି ସେ ଏକ ଅସ୍ଥିରଚିତ୍ତ ଲୋକ ଥିବାର ବୁଝିଲ । କାଳେ ତାହାର ଦାବି ପୂରଣ କଲେ ତାହାର ଲୋକମାନେ ଘାଟିରେ ମୋ ସହିତ ବିଶ୍ୱାସଘାତକତା କରିବେ, ଏହି ଆଶଙ୍କା କରି ମୋର ପ୍ରାଧାନ୍ୟ ଦେଖାଇ ତାହାକୁ ଧରିବା ପାଇଁ ସିପାହୀମାନଙ୍କୁ ହୁକୁମ ଦେଲ, ସେମାନଙ୍କ ସାହାଯ୍ୟରେ ମୋ ସହିତ ଦେଖା କରିବାର ଓ ଭଲ ବ୍ୟବହାର କଲେ ପୁରସ୍କୃତ ହେବାର କଥା ମଧ୍ୟ କହିଲ । ତାହାର ସମ୍ମୁଖରେ ସିପାହୀ-

ମାନଙ୍କୁ ବନ୍ଧୁକର ଗୁଳି ବାଣ୍ଟି ଦେଇ । ମୋର ଜଣକୁ ତାହାର ୫ ଜଣ ଲୋକ ଥିଲେ । ସେମାନେ ପ୍ରଥମ ପ୍ରଥମ ଭୟ ଦେଖାଇଲେ, ମାତ୍ର ମୁଁ ଅଟଳ ରହିଥିଲି । ଅବଶେଷରେ ମୋ ସଙ୍ଗରେ ୨୦ ଜଣ ଲୋକ ଦେବାପାଇଁ ସେ ପ୍ରସ୍ତୁତ ହେବାରୁ ତାହାର କଥାରେ ମୁଁ ସମ୍ମତ ହୋଇଥିଲି ।

୯ ତାରିଖ ମେ—ପ୍ରତ୍ୟୁଷରୁ ନୂତନ ସଙ୍ଗୀମାନଙ୍କ ସହିତ ଯାତ୍ରା କଲି; ଦେଖିଲି, ଗୃହରେ ଲୋକମାନଙ୍କର ଆଗ୍ରହ ନାହିଁ । ମୋତେ ଗୃହଆଡ଼େ ଘେରି ରହିଥିବା ପର୍ବତଗୁଡ଼ିକରେ ଅନେକ ଖୋଲ ଅଛି । ସେଗୁଡ଼ିକ ବୋଧ ହୁଏ ଅନ୍ୟ ଋତୁରେ ସୁନ୍ଦର ଦେଖାଯାଉଥିବ । ଶୀତରେ ତୁଷାରପାତଦ୍ୱାରା ପତ୍ର ଖସିପଡ଼ିଲା ପରି ବର୍ତ୍ତମାନର ଅସହ୍ୟ ଉତ୍ତାପ ପର୍ବତଫାଟରୁ ଜାତ ବୃକ୍ଷଗୁଡ଼ିକର ପତ୍ର ଖସାଇ ଦେଇଅଛି । ରୌଦ୍ରତାପରକ୍ଷାକାରୀ ବୃକ୍ଷପତ୍ରାଦିର ଆଚ୍ଛାଦନ ଅଭାବରୁ ଶୈଳଶିଖର-ଗୁଡ଼ିକ ପ୍ରଚଣ୍ଡ ତେଜରେ ବିଶେଷତଃ ମଧ୍ୟାହ୍ନ ପରେ ପ୍ରକୁପିତ ହୋଇ ସେହି ଉତ୍ତାପକୁ ଦ୍ୱିଗୁଣିତ କରି ଖୋଲଗୁଡ଼ିକରେ ପ୍ରତିଫଳିତ ହେବାରୁ ଖୋଲ ଭିତରର ରୁଦ୍ଧ ବାୟୁ ଶ୍ୱାସରୋଧ କରଏ । ଏହି ସମୟରେ ମୁଁ ମଧ୍ୟ ପାହାଡ଼ିଆ ଜ୍ୱରରେ ଆକ୍ରାନ୍ତ ହେବାରୁ ଅଶକ୍ତ ହୋଇ ଯାତ୍ରାରୁ ବିରାମ ନେଇଥିଲି । ରୌଦ୍ରତାପର ପ୍ରାବଲ୍ୟ ହେତୁ ବନମଧ୍ୟରେ ବିଷମ ଆତଙ୍କ ଉପସ୍ଥିତ ହୁଏ ଓ ଅଦମ୍ୟ ତୃଷା ହେଉଥିବାରୁ ଉତ୍ତାପର ଗୁରୁତା ଆହୁରି ବଢ଼ିଯାଏ । ଓପର ଓଳି ତିନିଟା ବେଳେ ମୋର ତମ୍ବୁର ତାପମାନ ଯନ୍ତ୍ରରେ ୧୧୨ ଡିଗ୍ରୀ ଉତ୍ତାପ ହୋଇଥିଲା ।

ଆଜି ବଡ଼ମୂଳରେ ବିଶ୍ରାମ ନେଇ । ଗଡ଼ ନାମରେ କଥିତ ଏଠାର ସ୍ଥାନଟିକୁ ଗୋଟିଏ ବାଡ଼ଘେରା ଗ୍ରାମ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥି ମଧ୍ୟରେ କେତେଗୁଡ଼ିଏ ଛପର ଘର ଅଛି, ତାହାର ଗୃହ ପାଖରେ ଶୁଖିଲା ବାଉଁଶର ଦଶ ଫୁଟ ଉଚ୍ଚ ବାଡ଼ ଅଛି । ଏହି ବାଡ଼ଟି ଯେପରି ନୂତନ ପ୍ରକାରେ କଟା ହୋଇ ମାଟିରେ ପୋତା ଗଣ୍ଡିଗୁଡ଼ିକ ସହିତ ଗୁନ୍ଥା

ଚଢ଼ାଇଅଛି । ଫାଟକ ନିକଟରେ ଏହି କାଠଗୁଡ଼ିକ ୧ ଫୁଟ ଉଚ୍ଚତାରେ ଚେପାଡ଼ା ହୋଇଅଛି, ମାତ୍ର ଅନ୍ୟତ୍ର ବ୍ୟବଧାନ ୩।୪ ଫୁଟ ଲେଖାଏଁ ଥିବାରୁ କାଠିଗୁଡ଼ିକ ଖଟାଗଲେ ବା ହଠାତ୍ ପୋଡ଼ିଗଲେ, ସେଥିରେ ଦୁଇଜଣ ଲୋକ ଅନାୟାସରେ ଯାଇ ଆସି ପାରିବେ । ଫାଟକଟି ଦେଖିବାକୁ ଠିକ୍ ଭୁଡ଼ ପରି, ତାହା ତଳ ଓ ଉପର ଦଣ୍ଡା ବାଉଁଶନିର୍ମିତ ପାଛିଆଦ୍ୱାରା ବନ୍ଧା ଥାଏ । ଦ୍ୱାରର ଉଚ୍ଚତାର ସମାନ ଆଉ ଗୋଟିଏ ଭୁଡ଼ ଉପରୁ ଦ୍ୱାର ବନ୍ଦ କରିଯାଏ । ଏହା ଏକ ସହଜ ଉଠାଇବା—ପକାଇବା ଦ୍ୱାରବିଶେଷ ଓ ଏହାର ନିର୍ମାଣକୌଶଳ ମୌଳିକ ଅଟେ ।

୧୯ ତାରିଖ ମେ—ପ୍ରତ୍ୟୁଷରୁ ଉଠି ଯାତ୍ରା କରି ବଡ଼ମୂଳଘାଟିରେ ପହଞ୍ଚିଲି । ବଡ଼ମୂଳ ଘାଟିକୁ ଓଡ଼ିଶା ପ୍ରଦେଶରେ ପ୍ରବେଶଦ୍ୱାରର କୁଞ୍ଚିକାଠି କହିଲେ ଚଳେ । କୁସୁମଗଡ଼ଠାରୁ ବଡ଼ମୂଳ ପର୍ଯ୍ୟନ୍ତ ସମସ୍ତ ପଥକୁ ପ୍ରକୃତ ପକ୍ଷରେ ଘାଟି ବୋଲିଯାଇ ପାରେ । କାରଣ ଏହା ପ୍ରାୟ ସର୍ବତ୍ର ଦୁର୍ଭେଦ୍ୟ, ମାତ୍ର ବଡ଼ମୂଳଘାଟି ସର୍ବାପେକ୍ଷା ଦୁର୍ଭେଦ୍ୟ ଘାଟି ଅଟେ । ବଡ଼ମୂଳ ଗଡ଼ଠାରୁ ଘାଟିର ମୁହଁ ୬୦୦ ଗଜ ବ୍ୟବଧାନରେ ଅବସ୍ଥିତ । ଏହାର ଦୈର୍ଘ୍ୟ ଏକ ମାଇଲ ହେବ । ଦୁଇଟି ଲମ୍ବଭାବରେ ଦଣ୍ଡାୟମାନ ଉଚ୍ଚ ପର୍ବତ ମଧ୍ୟରେ ୨୦୦ ଗଜ ମାତ୍ର ବ୍ୟବଧାନ ଅଛି ଓ ତାହାରି ଭିତରେ ବାଟ ପଡ଼ିଅଛି । ଏହି ଉପତ୍ୟକା ମଧ୍ୟରେ ଗୋଟିଏ ଗଭୀର ଓ କର୍ଦ୍ଦମମୟ କ୍ଷୁଦ୍ର ନଦୀ ଅଛି । ଦକ୍ଷିଣ ଦିଗର ପର୍ବତ ତଳେ ଓ ରାସ୍ତାର ଅତି ନିକଟରେ ନଦୀ ବହିଅଛି । ମୁଁ ଅଗତ୍ୟା ଘୋଡ଼ାରୁ ଓହ୍ଲାଇ କିଛି ଦୂର ପାହାଡ଼ ଉପରକୁ ଉଠିଲି । ଏଠାରେ ଅଜାଗାରେ ପାଦ ପଡ଼ିଲା ମାତ୍ରକେ ମନୁଷ୍ୟ ବା ପଶୁର ବେକ ମୋଡ଼ି ହୋଇଯିବା ବା ଗଭୀର ନଦୀର କାଦୁଅରେ ପଡ଼ି ପୋତି ହେବା ଅସମ୍ଭବ ନୁହେଁ । ତତ୍ପରେ ଉତ୍ତର ଦିଗରେ ପର୍ବତର ତଳ ଖୋଲି ଭିତରେ ନଦୀଟି ଧୀରେ ଧୀରେ ବହୁଅଛି । ଏଠାରେ ୫୦୦ ଫୁଟ ଦୀର୍ଘ ଓ ୨୦୦ ଫୁଟ ପ୍ରସ୍ଥ ଖଣ୍ଡିଏ କ୍ଷେତ୍ର ଅଛି । ଏହାର ଶେଷରେ ଦକ୍ଷିଣ ଦିଗର ପାହାଡ଼ମୂଳରେ ନଦୀ ପୁଣି ବହୁଅଛି । ଏଠାରେ ୧୦ ଫୁଟ ଚଉଡ଼ାରେ ପୂର୍ବାପେକ୍ଷା ଭଲ ବାଟ ଅଛି,

ମାତ୍ର ସେଥିରେ ଢିମା ପଥରର ଅଭାବ ନାହିଁ । ଏହି ହେତୁରୁ ଏ ଘାଟି ଅତି ଦୁର୍ଗମ ଓ ଦୁର୍ଭେଦ୍ୟ । ଯଦି **ଥର୍ମୋପାଇଲି** *(Thermopylae) ଘାଟି ଏହିପରି ଦୁର୍ଭେଦ୍ୟ ହୋଇଥାନ୍ତା, ତେବେ ଆମ୍ଭେମାନେ ଲିଓନିଡାସ (Leonidas) ଓ ବିଶତ ସ୍ପାର୍ଟାନ ସୈନ୍ୟମାନଙ୍କର ଅବଧୂର୍ଷ୍ୟ-କାରିତାର ଦୋଷ କ୍ଷାଳନ କରି ପାରନ୍ତେ ।

ଏଠାରୁ ପର୍ବତରୁ ପର୍ବତ ଉପରକୁ ଉଠି ୧୦ ମାଇଲ ଯାଇଥିଲି । ପ୍ରାକୃତିକ ନିୟମାନୁସାରେ ପାହାଡ଼ ଉପରୁ ପାଣି ବହିବହି ବା ଲୋକ-ମାନଙ୍କର ଯାତାୟତ ପଥରେ ପାଣି ଗଳିଗଳି ବାଟ ହୋଇଅଛି, ତାହା ମୁଁ ଠିକ କରି ପାରିଲି ନାହିଁ । ଏହାର ନିୟମିତ ଗତି ଶେଷୋକ୍ତ ମତ ପୋଷଣ କରୁଅଛି; ମାତ୍ର ରାସ୍ତାର ବନ୍ଧୁରତା ପ୍ରଥମୋକ୍ତ ମତର ସପକ୍ଷତା କରୁଅଛି, କାରଣ ମନୁଷ୍ୟ କେବେହେଁ କୌଣସି ରାସ୍ତାର ନିର୍ମାଣକାର୍ଯ୍ୟ ଏପରି ଅସମ୍ପୂର୍ଣ୍ଣ ରଖି ପାରେ ନାହିଁ । ପାଣି ବହିର ହିସାବରେ ଏହା ସମ୍ପୂର୍ଣ୍ଣ ପ୍ରାକୃତିକ କାର୍ଯ୍ୟ ବୋଲି ମନେ ହୁଏ । ଏହି ରାସ୍ତାରେ ଚକ୍ରଯାନ ନେଇ ହେବ ନାହିଁ କିମ୍ବା ବର୍ଷାବର୍ଷ୍ୟରେ ମଧ୍ୟ ପାଣିଯିବାର ବାଟ କାଟି ହେବ ନାହିଁ । ଏହି ପର୍ବତରେ ଆମ୍ବ, ଶାଳ ଓ ସମତଳ ଭୂମିଜାତ ସାଧାରଣ ବୃକ୍ଷ ଦେଖାଯାଏ; ମାତ୍ର ବୃକ୍ଷର ମୂଳ ଅଳ୍ପ ଗଭୀର ମାଟି ଭିତରକୁ ଯାଇଥିବାରୁ ଓ ଅଳ୍ପ ପୋଷଣକାରୀ ରସ ପାଇଥିବାରୁ ବୃକ୍ଷର ବର୍ଦ୍ଧନଶକ୍ତି ଅଳ୍ପ ହୁଏ । ତେଣୁ ସେଗୁଡ଼ିକ ସମତଳଭୂମିଜାତ ବୃକ୍ଷାଦି ତୁଳନାରେ ଅତି କ୍ଷୁଦ୍ରାକାର । ବନଭୂମିର ଉପରିଭାଗର ଦୃଶ୍ୟରୁ ବୃକ୍ଷଗୁଡ଼ିକ ୩।୪ ବର୍ଷ ପୂର୍ବେ ରୋପିତ ବୃକ୍ଷ ସଦୃଶ ଦେଖାଯାଏ । ଆମ୍ବଗୁଡ଼ିକ ବଣୁଆ ଆମ୍ବ, କ୍ଷୁଦ୍ରାକାର, ଖଟା ଓ ଚେରୁଆ । ଏହି ପାହାଡ଼ିଆ ଲୋକମାନଙ୍କୁ କେହି ପୁରସ୍କାର ନ ଦେଲେ ସେମାନେ ବଡ଼ ବଡ଼ ଗଛ କାଟି ବାଟ ଉପରେ ପକାଇ ଘୋଡ଼ା ପ୍ରଭୃତି ପଶୁର ଗତି ବନ୍ଦ କରନ୍ତି । ଏହାଦ୍ୱାରା ଯାତ୍ରୀ-

* ଉ: ପୂ: ଗ୍ରୀସରେ ସମୁଦ୍ର ଓ ଏଟା (Aeta) ପର୍ବତ ମଧ୍ୟବର୍ତ୍ତୀ ପ୍ରସିଦ୍ଧ ଘାଟି । ଏଠାରେ ଖ୍ରୀ: ପୂ: ୪୮୦ ରେ ପାରସିକ ଓ ସ୍ପାର୍ଟାର ଲୋକମାନଙ୍କ ମଧ୍ୟରେ ଯୁଦ୍ଧ ହୋଇ ଥିଲା ।

ମାନେ ବାଧ ହୋଇ ସେଗୁଡ଼ିକୁ ଅନ୍ତର କରିବା ନିମିତ୍ତ ସେମାନଙ୍କର ସାହାଯ୍ୟ କ୍ରୟ କରନ୍ତି; ତଦ୍ଵାରା ସେମାନେ ଅବଶେଷରେ ନିଜର ପ୍ରାପ୍ୟ ଆଦାୟ କରି ନିଅନ୍ତି । ତୁମେ ଦିଅ ବା ନ ଦିଅ, ସେମାନେ ତୁମର ଜିନିଷପତ୍ର କୌଶଳକ୍ରମେ କରାୟତ୍ତ କରି ନ ପାରିଲେ ଆଗ ପଛ ହୋଇଥିବା ଜିନିଷପତ୍ର ବଳପୂର୍ବକ ଛଡ଼ାଇ ନିଅନ୍ତି ବୋଲପଣ୍ଡାର ସେନାପତିଙ୍କୁ ସଙ୍ଗରେ ଆଣିଥିବାରୁ ଏପ୍ରକାର ଦୌରାତ୍ମ୍ୟ ମୋତେ ଭୋଗ କରିବାକୁ ପଡ଼ି ନ ଥିଲା । ବାଟରେ ଯାଉଁ ଯାଉଁ ପ୍ରତି ଘଣ୍ଟାରେ ତାହା ସହିତ ଘନିଷ୍ଠତା ବଢ଼ୁଥିଲା ଓ ସେ ଅଧିକ ବାକ୍ୟାଳାପ କରୁଥିଲା ।

ଏ ଦେଶର ଲୋକମାନେ ହୋକ୍କାର ପିକା ଟାଣିବାରେ ଯେପରି ପରିତୃପ୍ତି ଲାଭ କରନ୍ତି, ଅନ୍ୟ କାହିଁରେ ସେପରି ତୃପ୍ତ ହୁଅନ୍ତି ନାହିଁ । ତେଣୁ ପିକା ଲଗାଇବା ଲାଗି ନିଆଁର ଏକାନ୍ତ ପ୍ରୟୋଜନ ହୋଇଥାଏ । ପାର୍ବତ୍ୟ ଅଞ୍ଚଳର ଲୋକମାନେ ଯେଉଁଠାରେ ଶୁଖିଲା ଗଛଟିଏ ପାଆନ୍ତି, ତହିଁରେ ନିଆଁ ଲଗାଇ ରଖନ୍ତି । ତାହା ମାସମାସ କାଳ ଧୀରେଧୀରେ ଜଳି ପଥିକମାନଙ୍କୁ ନିଆଁ ଯୋଗାଇଥାଏ । ଏ କଥା ମିଃ ମେରିଟିଅଟଙ୍କ କଥାର ପୋଷକତା କରୁଅଛି । ସେ କହିଥିଲେ ଯେ, ନୀଳଗିରି ପାହାଡ଼ରେ ଆଗ୍ନେୟଗିରି ଅଛି ଏବଂ ସେ ନିଜେ ଏପ୍ରିଲ, ମେ ଓ ଜୁନ ମାସରେ ବାଲେଶ୍ୱର କୋଠି ଉପରୁ ସେ ପାହାଡ଼ରେ ଧୂମସ୍ତମ୍ଭ ଉଠିବାର ଦେଖିଅଛନ୍ତି । ଏହି ଆଗ୍ନେୟଗିରିଗୁଡ଼ିକ ଜଳନ୍ତା ଶୁଖିଲା ଗଛ ବ୍ୟତୀତ ଅନ୍ୟ କିଛି ନୁହେ । ପୂର୍ବୋକ୍ତ ଉଦେଶ୍ୟରେ ପାହାଡ଼ନିବାସୀ ଲୋକମାନେ ନିଆଁ ଧରିରହିବାର ଶୁଖିଲା ଗଛ ଦେଖି ନିଆଁ ଲଗାନ୍ତି । ଏହି ସମୟରେ କାଠରେ ରସ ଅଳ୍ପ ଓ ଜ୍ୱଳନ୍ତ ଶକ୍ତି ଅଧିକ ପରିମାଣରେ ଥିବାରୁ ପବନ ଯୋଗେ ଗୋଟିଏ ଗଛ ମଧ୍ୟ ଅନ୍ୟ ଗଛରେ ଘଷି ହୋଇ ଘର୍ଷଣ ଯୋଗେ ଅଗ୍ନି ଉତ୍ପାଦନ କରେ । ବୋଧ ହୁଏ, ଏହା ଲକ୍ଷ୍ୟ କରି ଦୁଇଖଣ୍ଡ ଶୁଖିଲା କାଠ ଘଷି ନିଆଁ ବାହାର କରିବାର ଉପାୟ ଲୋକମାନେ ଜାଣିଥିଲେ । କାମସ୍କଟକାଠାରୁ ଉତ୍ତମାଶା ଅନ୍ତରୀପ ପର୍ଯ୍ୟନ୍ତ ସର୍ବତ୍ର ଏହି ନିୟମରେ ନିଆଁ ବାହାର କରିବାର ପ୍ରଥା ଅଦ୍ୟାପି ଚଳୁଅଛି ।

ଦୁଇଟାବେଳେ ପାହାଡ଼ର ଶିଖରଦେଶରେ ଉପଗତ ହେଲୁ । ଏତତ ବାଟ ଚାଲି ମୁଁ ଅତ୍ୟନ୍ତ କ୍ଳାନ୍ତ ହୋଇଥିଲି । ଏଠାରେ ଗୋଟିଏ ଜଳାଶୟ ନିକଟରେ ବିଶ୍ରାମ କଲି । ପୂର୍ବେ ଏହିଠାରେ **ପଦ୍ମଭଳା*** ଗ୍ରାମ ଥିଲା । ରାତିରେ ବାଘହୁରି ପଡ଼ିଥିଲା । ପରଦିନ ସକାଳେ ଦେଖାଗଲା ଯେ, ମୋର ଗୋଟିଏ ବଡ଼ କୁକୁର ନାହିଁ । ମୋର ତେଣୁ ହେଟାବାଘର ସନ୍ଦେହ ହେଲା । କାରଣ କୁକୁରମାଂସ ସେ ପଶୁଟିର ଅତ୍ୟନ୍ତ ପ୍ରିୟବସ୍ତୁ ।

୨୦ ତାରିଖ ମେ—ଅତ୍ୟନ୍ତ କ୍ଳାନ୍ତିବଶତଃ ଚତୁର୍ଦ୍ଦିଗର ସନ୍ଧ୍ୟାକାଳୀନ ଦୃଶ୍ୟ ଦେଖି ପାରି ନ ଥିଲି । ତଥାପି ଉଚ୍ଚତମ ପର୍ବତର ଶିଖରଦେଶରେ ଥିବା ଯୋଗୁଁ ନିଜକୁ ପ୍ରଶଂସା କରିଥିଲି । ପରଦିନ ପ୍ରତ୍ୟୁଷରେ ଉଠି ସମତଳ ଭୂମିର—ଯେଉଁ ବାଟରେ ଆସିଥିଲି ତାହାର—ଦୃଶ୍ୟ ଦେଖିବାର ଓ ପ୍ରତ୍ୟେକ ଶୃଙ୍ଗଗଣନା କରିବାର ଆଶାରେ ବିଶେଷ ଆନନ୍ଦିତ ହୋଇଥିଲି, କିନ୍ତୁ ଗଛରେ ଉଠି ଦେଖିଲି ଯେ, ଦକ୍ଷିଣରେ ଥିବା ପର୍ବତଟି ଉଚ୍ଚତାରେ ଆକାଶ ସ୍ପର୍ଶ କଲା ପରି ଜଣାଯାଉଅଛି ଓ ଭୂମି ଉପରେ ବୃକ୍ଷାଦିର ବନ ଥିବାରୁ ଅଧିମାଇଲଏ ଦୂର ପର୍ଯ୍ୟନ୍ତ ଦେଖିବାର କଠିନ ହେଲା । କାରଣ ସେଠାରେ ଗୋଟିଏ ପାହାଡ଼ ବାଧା ଦେଉଥିଲା । ମୁଁ ଯେଉଁଠାରେ ଥିଲି, ତାହାର କୌଣସି ଉଚ୍ଚ ସ୍ଥାନରୁ ପରିଦୃଶ୍ୟମାନ ରମଣୀୟ ଦୃଶ୍ୟାବଳୀ ଦେଖିବା ଆଶାରେ ଜଙ୍ଗଲ ଭିତରେ ପ୍ରାୟ ଏକ ମାଇଲ ପଥ ବୁଲି ବୁଲି ଗୋଟିଏ ଖୁବ ଗମ୍ଭୀର ଗହ୍ୱର ଦେଖିଥିଲି । ଏହା ବର୍ଷାଦିନେ ଗୋଟିଏ ସୁନ୍ଦର ଜଳପ୍ରପାତରେ ପରିଣତ ହେଉଥିବ, ମାତ୍ର ବର୍ତ୍ତମାନ ଏଭିରନାସ (Avernus†) ର ପତନ ସଦୃଶ ଜଣାଯାଉଥିଲା ।

---

*ପଦ୍ମଭଳା ବୌଦ୍ଧ ଖଣ୍ଡର ପୂର୍ବ ସୀମାରେ ଅବସ୍ଥିତ । ଖ୍ରୀ: ୧୮୬୧ ରେ ଫିରେଙ୍ଗସାହ୍ ଭୋଗଲବ ଏଠାରେ ହାଣ ଧରିଥିଲେ ।

†ଏହାର ଭୌଗୋଳିକ ଅବସ୍ଥିତି ଜଣାଯାଇ ନାହିଁ । ବୋଧହୁଏ ଏହା ଇଂଲଣ୍ଡର ଏକ ଜଳପ୍ରପାତ ।

ତସ୍ପରେ ପାହାଡ଼ରୁ ଓହ୍ଲାଇ ଆସିଲି । ଏ ସ୍ଥାନ ସେତେ ବନ୍ଧୁର ନ ହେଲେ ମଧ୍ୟ ଉଠିବା ଅପେକ୍ଷା ଓହ୍ଲାଇବା ଅଧିକ କଷ୍ଟସାଧ୍ୟ ମଣିଲି । ମୋର ପଥପ୍ରଦର୍ଶକଙ୍କୁ ଗୋଟିଏ ଲାଲ ଥାନ, ଖଣ୍ଡିଏ ସଫା ଲୁଗା ଓ ଚଷମା ଉପହାର ଦେଇ ବିଦାୟ ଦେଲି । ଏହା ପାଇ ସେ ଅତିଶୟ ପ୍ରୀତ ହୋଇ ମୋ ସହିତ ଚିରବନ୍ଧୁତ୍ୱ ରଖିବାପାଇଁ ପ୍ରତିଶ୍ରୁତ ହେଲା । ଏହା ପରେ ଟେବୀହରାଜ୍ୟରେ (Province) ପ୍ରବେଶ କଲି । ପାହାଡ଼ ଉପରୁ ଖସି ଆସିବାର ବାଟ ଦେଡ଼ମାଇଲ ମାତ୍ର, କିନ୍ତୁ ଏତିକରେ ଦିନର ଅଧିକାଂଶ ସମୟ ବିତିଗଲା । ସନ୍ଧ୍ୟାବେଳେ ଖୋଲ ଭିତରେ ଥିବା **କୁସୁମଗଡ଼** ଗ୍ରାମରେ ବିଶ୍ରାମ ନେଲି । ଏହି ଖୋଲଟି କ୍ଷୁଦ୍ର କ୍ଷୁଦ୍ର ବୃକ୍ଷାଦିରେ ପୂର୍ଣ୍ଣ । ପର୍ବତକୁ ଉଠିବା ଅପେକ୍ଷା ପର୍ବତରୁ ଓହ୍ଲାଇବା ମାପରେ ଅଧିକ ନୁହେ ବୋଲି ମୋର ମନେ ହେଲା । ଏଣୁ ମୁଁ ଯେଉଁଠାରେ ଥିଲି, ତାହା ଘାଟିର ବିପରୀତ ପାର୍ଶ୍ୱ ଅପେକ୍ଷା ଉଚ୍ଚତର ।

ଏଠାର ଭୂଭାଗ ପର୍ବତମୟ, ମଧ୍ୟେ ମଧ୍ୟେ ୪ ଠାରୁ ୧୬ ମାଇଲ ପରିଧି-ବ୍ୟାପୀ ଖୋଲା ଅଞ୍ଚଳ ଅଛି । ଏହି ଭୂଖଣ୍ଡ ମଧ୍ୟରେ ଗ୍ରାମର ଚତୁଃପାର୍ଶ୍ୱ-ବର୍ତ୍ତୀ ୩୦୦ ରୁ ୭୦୦ ଏକର ପରିମିତ ଧାନ୍ୟକ୍ଷେତ୍ର ଦେଖାଯାଏ । ଏଣୁ ଗୃହଜମି ଦେଖିଲେ ମନେ କରି ନେବ ଯେ, ନିକଟରେ ଗ୍ରାମ ଅଛି । ଗ୍ରାମଗୁଡ଼ିକରେ ଦରଜିଆ କାଠ ଓ ବାଉଁଶର ବାଡ଼ ଦେଖାଯାଏ । ସେପରି ବାଡ଼ ମୁଁ ପୂର୍ବେ ବଡ଼ମୂଳ ବୃତ୍ତାନ୍ତରେ ବନ୍ୟ ପଶୁଠାରୁ ଗୃହପାଳିତ ପଶୁ ଓ ଗ୍ରାମବାସୀଙ୍କ ରକ୍ଷାର୍ଥ ନିର୍ମିତ ବୋଲି ବର୍ଣ୍ଣନା କରିଥିଲି । ଏଠାରେ ମୁଁ ସର୍ବପ୍ରଥମ ସ୍ତ୍ରୀଲୋକମାନଙ୍କୁ ହଳ କରିବାର ଦେଖିଲି, ତାଙ୍କର ପିଲାମାନେ ବଳଦ ଖେଦନ୍ତି । ଏହି ପ୍ରଥା ସମସ୍ତ ପାର୍ବତ୍ୟ ପ୍ରଦେଶରେ ଦୃଷ୍ଟ ହୁଏ । ପୁରୁଷମାନେ କୁରହାଡ଼ ଓ ବଲମ ନେଇ ବଣରେ ବୁଲି ଯାହା ପାଆନ୍ତି ଲୁଟି ଆଣନ୍ତି । ସୁନ୍ଦରୀମାନଙ୍କୁ ଏହିପରି ଅପକର୍ମରେ ନିଯୁକ୍ତ କରିବା ବର୍ବର ଲୋକମାନଙ୍କର ଜାତିଗତ ଲକ୍ଷଣ । ବର୍ଷାକାଳରେ ପାଚୁଥିବା ଫସଲ ଛଡ଼ା ଅନ୍ୟ କୌଣସି ଫସଲର ଆବାଦ ସେମାନଙ୍କ-ଦ୍ୱାରା ହୁଏ ନାହିଁ । ଯାହା ଅନ୍ୟ ମାସମାନଙ୍କରେ ଅମଳ କରାଯାଏ,

ତାହାର ଗୃଷ ଏକାବେଳକେ ଏମାନେ କରନ୍ତି ନାହିଁ; କାରଣ ସେ ସବୁ ମାସରେ ମରହଟ୍ଟାମାନେ ଲୁଣ୍ଠନବୃତ୍ତରେ ବାହାରିବାର କଥା ଲୋକମାନେ ଜାଣନ୍ତି ।

୨୧ ତାରିଖ ମେ । ଯେ ସ୍ୱାଧୀନତାର ସନ୍ତାନ, ଯେ ଆବାଲ୍ୟରୁ ଶିକ୍ଷା ପାଇଅଛି, ଯେ ଜନସାଧାରଣର ପାଳନ ପାଇଁ ଗଭର୍ଣ୍ଣମେଣ୍ଟ ସୃଷ୍ଟ ଓ ଜଣେ ଅତି ନଗଣ୍ୟ ଲୋକ ମଧ୍ୟ ଅତ୍ୟାଗୃର ବିରୋଧରେ ଅଭିଯୋଗ କରିବାର ଅଧିକାରୀ ଏବଂ ଅଭିଯୋଗର ପ୍ରତିକାରରେ ଲୋକହିତକର ଓ ବିହିତ ପ୍ରତିକାର ଅଛି, ସେହି ଲୋକ ପକ୍ଷରେ ମରହଟ୍ଟା ଶାସନପ୍ରଣାଳୀ ଅତୀବ ବିରସ ବୋଲି ମନେ ହେବ । ମାତ୍ର ଏ ଦେଶର ଜନମଣ୍ଡଳୀ ସ୍ୱଭାବତଃ ଉଦାସଭାବାପନ୍ନ ଥିବାରୁ ଅତ୍ୟାଗୃର ଅନୁଭବ କରିବାର ଶକ୍ତିରହିତ; ଏମାନଙ୍କ ହୃଦୟରେ ଭୀରୁତାସୂଚକ ବିଶ୍ୱାସଘାତକତା ପୂର୍ଣ୍ଣ ଥିବାରୁ ଏମାନେ ତଦ୍ୱାରା ପ୍ରଣୋଦିତ ହୋଇ ନିଜର ପ୍ରତିବେଶୀକୁ ମଧ୍ୟ ଅବିଶ୍ୱାସ କରନ୍ତି ଏବଂ ନିଜକୁ ଯେ ରକ୍ଷା କରି ପାରନ୍ତି ତାହାଠାରେ ବିରୋଧ ଘଟାନ୍ତି । ଏହି ହେତୁରୁ ଯେଉଁ କାର୍ଯ୍ୟରେ ସମସ୍ତେ ବାଧା ଦପୂଜାଇ ପାରନ୍ତେ, ସେ କାର୍ଯ୍ୟ କରିବାରେ ଅଗତ୍ୟା ବାଧ୍ୟ ହୁଅନ୍ତି ଓ ନିଜର ବିପଦକୁ ଦୈବଦୁର୍ବିପାକ ଛଡ଼ା ଅନ୍ୟ କିଛି ଧାରଣା କରି ପାରନ୍ତି ନାହିଁ ।

୧୭୩୮* ଖ୍ରୀଷ୍ଟାବ୍ଦରେ **ଅଲିବର୍ଦ୍ଦି ଖାଁ**ଙ୍କର ବିରାଗଭାଜନ ହୋଇ **ମିର ହବିବ୍** ଯେତେବେଳେ ରଘୁଜୀଙ୍କୁ ଓଡ଼ିଶାକୁ ଡାକ ଆଣିଲେ, ସେତେବେଳେ ଏ ଦେଶ ପୁରୀ ରାଜାଙ୍କର ଅଧୀନସ୍ଥ କ୍ଷୁଦ୍ର କ୍ଷୁଦ୍ର ଜମିଦାରୀରେ ବିଭକ୍ତ ହୋଇଥିଲା । ଚିଲିକା ହ୍ରଦର ନିକଟବର୍ତ୍ତୀ **ପୁରୀ ରାଜା**ଙ୍କ ରାଜଧାନୀରେ ପ୍ରସିଦ୍ଧ **ଜଗନ୍ନାଥ ମନ୍ଦିର** ବିଦ୍ୟମାନ । ଏହି ରାଜାଙ୍କୁ ତାଙ୍କର ପ୍ରଜାବର୍ଗ ଦେବତା ସଦୃଶ ସମ୍ମାନ କରନ୍ତି । ମରହଟ୍ଟା-ମାନେ ତାଙ୍କୁ ଅପରାଜେୟ ମନେ କରିଥିଲେ; ତେଣୁ କାଳେ ସେ ସୁବିଧା

*ଏହି ସାଲଟି ଭୁଲ ।

ପାଇ ନାଗପୁର ଓ କଟକ ଯାତାୟାତର ପଥରୋଧ କରିବେ, ଏହା ଭାବି ସେମାନେ ତାଙ୍କର କ୍ଷମତା ହ୍ରାସ କରିବା ନିମିତ୍ତ ଏ ଦେଶକୁ ପୁନର୍ବାର ବିଭକ୍ତ କଲେ; କ୍ଷୁଦ୍ର ଜମିଦାରମାନଙ୍କୁ ପୁରୀରାଜାଙ୍କର ଅଧୀନତାରୁ ମୁକ୍ତ କରି ସ୍ୱାଧୀନ କଲେ ଓ ଢେଙ୍କାନାଳ, ବାଙ୍କି, ନରସିଂହପୁର, ତିଗିରିଆ, ତାଳଚେର, ଖଣ୍ଡପଡ଼ା, ଦଶପଲ୍ଲା, ହିନ୍ଦୋଳ, ଅନୁଗୋଳ ଓ ବୌଦ ଚକଲାମାନଙ୍କର ପୁନର୍ଗଠନ କଲେ। ରଘୁଜୀଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ରମାନଙ୍କ ମଧ୍ୟରେ ରାଜ୍ୟପ୍ରାପ୍ତି ନିମିତ୍ତ ବିରୋଧ ଉପସ୍ଥିତ ହୋଇଥିଲା। ଜାନୋଜି ବେରାର ଓ ଓଡ଼ିଶା ଓ ଏହି ଉଭୟ ରାଜ୍ୟର ମଧ୍ୟବର୍ତ୍ତୀ ସମସ୍ତ ପାର୍ବତୀୟ ଜମିଦାରମାନଙ୍କୁ କରାୟତ୍ତ କରି ମଧ୍ୟ ପେଶବାପଦର ପ୍ରଧାନ ଅଭିଳାଷୀ **ମାଧୋଜି**ଙ୍କ ସହିତ ସଦ୍ଭାବ ରଖି ପାରି ନ ଥିଲେ। ଅନତି-ବିଳମ୍ବରେ ଏହି ଅନ୍ତର୍ବିବାଦ ପ୍ରକାଶ୍ୟ ବିବାଦରେ ପରିଣତ ହୋଇଥିଲା। ସେ ତାଙ୍କର ଅଧୀନସ୍ଥ ପାର୍ବତ୍ୟ ନୃପତିମାନଙ୍କୁ ସମ୍ପୂର୍ଣ୍ଣ ବଶୀଭୂତ କରିବା ପାଇଁ ଅତ୍ୟନ୍ତ ତତ୍ପର ଥିଲେ ଓ ସେମାନଙ୍କଠାରୁ କର ଆଦାୟ କରି ସନ୍ତୁଷ୍ଟ ହୋଇଥିଲେ। ଏହି କର ନିୟମିତରୂପେ ଆଦାୟ ହେଉ ନ ଥିବାରୁ ସେ ବର୍ଷା ଋତୁର ଅବସାନ ପରେ ସୈନ୍ୟ ଘେନି ବାହାରୁଥିଲେ ଓ ଯାହା ପାଉଥିଲେ ତାହା ବଳପୂର୍ବକ ଆଦାୟ କରୁଥିଲେ। କର ନ ଦେବାର ଦୃଢ଼ିର ପରିଭବସ୍ୱରୂପ ସେମାନଙ୍କୁ ମଧ୍ୟ ଯୁଦ୍ଧଯାତ୍ରାର ବ୍ୟୟ ବହନ କରିବାକୁ ପଡ଼ୁଥିଲା। ପ୍ରଜାପାଳନ ନିମିତ୍ତ ରାଜା ଏକମାତ୍ର ଦାୟୀ, ମାତ୍ର ପ୍ରଜାମାନେ ଏତେ ମୂର୍ଖ ଯେ, ରାଜଗାଡ଼ିର ବିରୁଦ୍ଧାଚାରୀ ଓ କଣ୍ଟକରୂପୀ ରାଜାକୁ କେବେହେଁ ରାଜ୍ୟଚ୍ୟୁତ କରିବାରେ ଅଭିଳାଷୀ ହୁଅନ୍ତି ନାହିଁ।

ପ୍ରତ୍ୟୁଷରୁ କୁସୁମଗଡ଼ ଛାଡ଼ି ୧୦ ମାଇଲ ଅତିକ୍ରମ କରି ପୁନର୍ବାର ମହାନଦୀ କୂଳରେ ଉପନୀତ ହେଲି। ମୁଁ ଯେଉଁଠାରେ ଏହାକୁ ଛାଡ଼ି ଆସିଥିଲି, ତାହା ଅପେକ୍ଷା ଏଠାରେ ନଦୀଗର୍ଭ ଅଧିକ ଗମ୍ଭୀର, ଅପରିସର ଓ ଶିଳାପୂର୍ଣ୍ଣ। ପର୍ବତଗୁଡ଼ିକ ସେତେ ଉଚ୍ଚ ନ ଥିବାରୁ ଓ ଖୋଲଗୁଡ଼ିକରେ ବିସ୍ତୀର୍ଣ୍ଣ ପ୍ରାନ୍ତର ଥିବାରୁ ମୁଁ ଅନେକ ପର୍ବତ ଓ ଖୋଲ ଅତିକ୍ରମ କରି

**ରାମଗଡ଼**ଠାରେ ବିଶ୍ରାମ ନେଲି । ରାମଗଡ଼ ନଦୀକୂଳବର୍ତ୍ତୀ ଗୋଟିଏ ବୃହତ୍ ଗ୍ରାମ ।

୨୨ ତାରିଖ ମେ । ଆଜିର ପଥ ଅଧିକ ଉଚ୍ଚନୀଚ ଥିବାର ଦେଖିଲି । ପାହାଡ଼ ଭିତରେ ଖୋଲ ପରେ ଖୋଲ ଅତିକ୍ରମ କରିବାକୁ ପଡ଼ିଲା । ଏଠାରେ ବଡ଼ ବଡ଼ ପର୍ବତ ନାହିଁ । ଗ୍ରାମଗୁଡ଼ିକ ମଧ୍ୟ ପରସ୍ପରର ନିକଟବର୍ତ୍ତୀ; କାରଣ ଆଜି ପନ୍ଦର ମାଇଲରେ ଛଅଗୋଟି ଗ୍ରାମ ଅତିକ୍ରମ କରିବାକୁ ପଡ଼ିଲା । ଏ ପ୍ରଦେଶରେ ବଣିକମାନେ ରାଜାଙ୍କ ରାଜ୍ୟରେ ଗଲାବେଳେ ତାଙ୍କୁ ଭେଟି ସହ ଆବେଦନ କରି ଅନ୍ୟ ରାଜ୍ୟର ସୀମାରେ ପହଞ୍ଚାଇଦେବା ନିମିତ୍ତ ସଙ୍ଗରେ ରକ୍ଷକ ରାଜାଙ୍କଠାରୁ ପ୍ରହରୀ ନେଇଥାନ୍ତି । ବଣିକମାନଙ୍କର ପଣ୍ୟାଦି ଲୁଣ୍ଠନ ଅପେକ୍ଷା ଏହାଦ୍ୱାରା ରାଜାଙ୍କର ଅଧିକ ସ୍ୱାର୍ଥରକ୍ଷା ହୁଏ; କାରଣ ଲୁଣ୍ଠନରେ ପାହାଡ଼ିଆମାନେ ଅଧିକାଂଶ ଜିନିଷ ନେଇ ପଳାଇଥାନ୍ତି । ଏହା ଛଡ଼ା ମରହଟ୍ଟାମାନେ ଏପରି ଘଟନାର ସନ୍ଧାନ ପାଇ ଅବିଳମ୍ବେ ସୈନ୍ୟ ପଠାଇ ରାଜାଙ୍କଠାରୁ ଲୁଣ୍ଠନର କ୍ଷତିପୂରଣ ଦାବି କରନ୍ତି ଓ ଅପହୃତ ଦ୍ରବ୍ୟାଦି ମୂଲ୍ୟର ୫ ଗୁଣ ପରିମିତ ମୂଲ୍ୟ ଦାଖଲ କରିବାପାଇଁ ବାଧ୍ୟ କରନ୍ତି ।

ଆଜି **ବୌଦ** ଗଡ଼ରେ ବିଶ୍ରାମ କଲି । ଏଠାରେ ରାଜା ରହନ୍ତି । ଏହାର ଚତୁର୍ଦ୍ଦିଗରେ ବାଡ଼ ଅଛି । ଏଠାରେ ଭବାନୀ ପଣ୍ଡିତଙ୍କ ପତ୍ର ମୋର ହସ୍ତଗତ ହେଲା । ସେଥିରେ ତାଙ୍କ ପ୍ରଭୁଙ୍କର ଅବସ୍ଥା ଓ ନାଗପୁରରୁ ଆଗତ ଗୌରୀ ପନ୍ତ (Goree Punt) ନାମକ ଜଣେ ବିଶିଷ୍ଟ ମରହଟ୍ଟାଙ୍କ କଥା ସେ ଉଲ୍ଲେଖ କରିଥିଲେ । ଗୌରୀ ପନ୍ତ ମୋତେ ସମସ୍ତ ବିବରଣ କହିଥିଲେ । ମରହଟ୍ଟାମାନେ ଦୁଇ ଦଳରେ ବିଭକ୍ତ; ଯଥା— ପୂଜାକର୍ମ ଅନୁଷ୍ଠାନକାରୀ ବ୍ରାହ୍ମଣ ଓ ଯୁଦ୍ଧବିଦ୍ୟାବିଶାରଦ କ୍ଷତ୍ରିୟ । ରାଜା ବହୁପୁରୁଷ ଯାବତ୍ ବ୍ରାହ୍ମଣବଂଶଜ ଥିଲେ । ପ୍ରାୟ ୩୦ ବର୍ଷ ପୂର୍ବେ ଏକ ଦୁର୍ବଳ ନାବାଳକ ରାଜାଙ୍କ ସମୟରେ କ୍ଷତ୍ରିୟ ପେଶବାଙ୍କ ହସ୍ତରେ ରାଜ୍ୟଭାର ଅର୍ପିତ ହୋଇଥିଲା । ତାଙ୍କର ନାମ ମାଧୋ ରାଓ

ବର୍ତ୍ତିମାନ ରାଜପଦରେ ଅଭିଷିକ୍ତ ଓ ପୁନାଠାରେ ବନ୍ଦୀ । ପେଶ୍ୱାର ଓ ଓଡ଼ିଶାର ସମ୍ରାଟ (Soveriegn) ଜାନୋଜି ପୂର୍ବ ରାଜବଂଶଧର ବ୍ରାହ୍ମଣ ଥିବାରୁ ତାଙ୍କର ପ୍ରଧାନ ବୈରୀ ; ବର୍ତ୍ତିମାନର ରାଜବଂଶ ଲୁପ୍ତ ହେଲେ ସେ ସାମ୍ରାଜ୍ୟର ଅଧିକାରୀ ହେବାର ଆଶା ପୋଷଣ କରନ୍ତି । ଗତ ବର୍ଷ ଜାନୋଜି **ନିଜାମ ଆଲି**ଙ୍କଠାରୁ ଅର୍ଥଗ୍ରହଣ କରି ପେଶବାଙ୍କୁ ଆକ୍ରମଣ କରିବା ନିମନ୍ତେ ଆପଣାକୁ ନିଯୁକ୍ତ କରିଥିଲେ । ଗତ ଜୁନ ମାସରେ ଏକ ଅଭିଯାନରେ ଅକୃତକାର୍ଯ୍ୟ ହେଲେ । ଯେଉଁ ସୈନ୍ୟମାନଙ୍କର ବହୁ ଦିନର ବେତନ ବାକି ପଡ଼ିଥିଲା, ସେମାନଙ୍କ ଜିମାରେ ନିଜାମର ଅନେକ ସମର ସରଞ୍ଜାମ ରଖା ହୋଇଥିଲା । ଜାନୋଜିଙ୍କ ମିତ୍ରପକ୍ଷ ବର୍ଷା ହେତୁ ଜଳପୂର୍ଣ୍ଣ **କୃଷ୍ଣା ନଦୀ**ର ପରପାରରେ ଥିଲେ । ମରହଟ୍ଟା ପକ୍ଷରେ ଏତେ ବଡ଼ ପ୍ରଲୋଭନପ୍ରଦ ସୁଯୋଗ ଛାଡ଼ିବା କି ସହଜ ? ସମସ୍ତ ସରଞ୍ଜାମ ଲୁଣ୍ଠନ କରି ସେ ତଦ୍ଦ୍ୱାରା ସୈନ୍ୟମାନଙ୍କର ପ୍ରାପ୍ୟ ଦେଇଥିଲେ । ଏହାଦ୍ୱାରା ନିଜାମ ଆଲି ଜାନୋଜିଙ୍କର ପ୍ରବଳ ଶତ୍ରୁ ହୋଇଥିଲେ । ଏଣୁ ସେ ଅବିଳମ୍ବେ ମାଧୋ ରାଓଙ୍କ ସହିତ ସନ୍ଧି ସ୍ଥାପନ କଲେ ।

ଏହି ପ୍ରକାରେ ପ୍ରତିଦ୍ୱନ୍ଦୀମାନଙ୍କ ଅନୁଗ୍ରହ ଉପରେ ନିର୍ଭର କରି ଜାନୋଜି ନଭେମ୍ବର ମାସର ପ୍ରଥମ ଅଭିଯାନରେ ଆକ୍ରାନ୍ତ ହେଲେ ଓ ଗୋଟିଏ ସାଧାରଣ ଯୁଦ୍ଧରେ ପରାଭୂତ ହେଲେ । ଫେବ୍ରୁୟାରୀ ମାସରେ ତାଙ୍କର ରାଜଧାନୀ ନାଗପୁର ଅଧିକୃତ ଓ ଭସ୍ମୀଭୂତ ହେଲା । ମାଧୋ ରାଓଙ୍କ ଇଚ୍ଛାନୁଯାୟୀ ସର୍ତ୍ତରେ ସନ୍ଧି କରିବାକୁ ସେ ଟିକିଏ କୁଣ୍ଠିତ ହେଲେ ନାହିଁ । ତେଣୁ ଭବାନୀ ପଣ୍ଡିତ ମୋତେ ଲେଖିଥିଲେ ଯେ, ତାଙ୍କର ପ୍ରଭୁ ବର୍ତ୍ତିମାନ ଇଂରେଜମାନଙ୍କ ସହିତ ମିତ୍ରତା ସ୍ଥାପନର ସକଳ ଅଭିଳାଷ ଦମନ କରିବାକୁ ଇଚ୍ଛୁକ ହେବେ । ଗୌରୀ ପନ୍ତ ମଧ୍ୟ ସେହି ମତ ବ୍ୟକ୍ତ କରିଥିଲେ । ଜାନୋଜିଙ୍କର ଏହି ଭାଗ୍ୟବିପର୍ଯ୍ୟୟ ହେତୁ ମୋର କାର୍ଯ୍ୟପ୍ରଣାଳୀ ସମସ୍ତ ପରିବର୍ତ୍ତନ କରିବାକୁ ବାଧ୍ୟ ହୋଇ ନାଗପୁର

ଯାତ୍ରାର କଳ୍ପନା ତ୍ୟାଗ କଲି ଓ ସ୍ଥିର ବ୍ୟବସାୟ ମୋର ଏକମାତ୍ର ଉଦ୍ଦେଶ୍ୟ ହେଲା ।

୨୩ ତାରିଖ ମେ । ଏ ସମସ୍ତ ଗୁରୁତର କଥା ଦିନକର ଚିନ୍ତାରେ ସ୍ଥିର କରାଯାଇ ନ ପାରେ । ମୁଁ ଏଠାରେ ଗୌରୀ ପନ୍ତଙ୍କ ଆଗମନ ପ୍ରତୀକ୍ଷାରେ ବୁଲଇଦିନ ରହିଲି । ଏହି ସମୟ ମଧ୍ୟରେ ଭବାନୀ ପଣ୍ଡିତ ଓ ଲର୍ଡ କ୍ଲାଇବଙ୍କୁ ପତ୍ର ଲେଖିଲି । ଗୌରୀ ପନ୍ତଙ୍କୁ ଦେଖିଲି ଯେ ସେ ଜଣେ ବିଚକ୍ଷଣ ବ୍ୟକ୍ତି ଓ ପ୍ରକୃତ ମରହଟ୍ଟାଙ୍କ ଭାବରେ ପ୍ରଣୋଦିତ ହୋଇ ମାଧୋ ରାଓଙ୍କର ସର୍ବନାଶ କରିବାର ଅଭିପ୍ରାୟ ତ୍ୟାଗ ନ କରି ଅନ୍ୟ ଉପାୟରେ ଆକ୍ରମଣ କରିବାପାଇଁ ଦୁର୍ଗଭେଦ୍ୟ ପାର୍ବତ୍ୟ ପଥ ଅନୁସନ୍ଧାନ କରିବାର ଚେଷ୍ଟା କରି କାର୍ଯ୍ୟସାଧନର ପନ୍ଥା ସ୍ଥିର କରିବା ନିମିତ୍ତ ଉପଦେଶ ଦେଇଥିଲେ । ଏହି ଅବସର ସମୟରେ ବୌଦର ରଜା ଏ ଦେଶୀୟ ପ୍ରଥାମତେ ମୋ ନିକଟକୁ ଖାଦ୍ୟଦ୍ରବ୍ୟାଦିର ସରଞ୍ଜାମ ଉପହାରସ୍ୱରୂପ ପଠାଇଥିଲେ ଓ ତତ୍‌ସଙ୍ଗେ କହି ପଠାଇଥିଲେ ଯେ, ଯଦି ମୁଁ ପ୍ରକାଶ୍ୟଦାଳରେ ତାଙ୍କ ସହିତ ସାକ୍ଷାତ୍ କରିବାକୁ ସମ୍ମତ ହୁଏଁ, ତେବେ ସେ ମୋ ସହିତ ସାକ୍ଷାତ୍ କରିବେ । ମୁଁ ପ୍ରତ୍ୟୁତ୍ତର ଦେଇଥିଲି ଯେ, ମର୍ଯ୍ୟାଦାର ପ୍ରଣିବ୍ୟବହାର ମୋର ଦୁର୍ବଳ ଅବସ୍ଥାରେ ଏକାନ୍ତ ଅସମ୍ଭବ । ପ୍ରତ୍ୟାବର୍ତ୍ତନ ସମୟରେ ଏହି ସମ୍ମାନ ଦେଖାଇବା ପାଇଁ ମୁଁ ତାଙ୍କୁ ପ୍ରାର୍ଥନା କରିଥିଲି । ମୁଁ ପ୍ରକୃତ ପୀଡ଼ିତ ଥିଲି କି ନା, ଏହା ଜାଣିବା ନିମିତ୍ତ ସେ ଗୁପ୍ତଚର ପଠାଇଥିଲେ । ମୋର ଅସୁସ୍ଥତା ସତ୍ୟ ନ ହୋଇଥିଲେ ମାନନୀୟ ରଜା ମହୋଦୟ ମୋ ଉପରେ କୋପାନ୍ୱିତ ହୋଇଥାନ୍ତେ । ତେଣୁ ସେ ବିଷୟରେ ସନ୍ତୁଷ୍ଟ ହୋଇ ମୋତେ ଦେଖା କରିବାକୁ ଆସିଥିଲେ । ତାଙ୍କର ଅନୁଚରବର୍ଗ ସଂଖ୍ୟାରେ ଛଅଶତ ଥିଲେ । ଅନେକଙ୍କ ହସ୍ତରେ ଧନୁଃଶର, କେତେକଙ୍କ ହସ୍ତରେ ଢାଲ ତରବାରି ଥିଲା; ପ୍ରାୟ ୨୦ ଜଣ ବନ୍ଧୁକଧାରୀ ଥିଲେ, ଅବଶିଷ୍ଟ ସମସ୍ତଙ୍କ ହସ୍ତରେ କୁଠାର ବା ବଲ୍ଲମ ଥିଲା । ସେ ପାଲଙ୍କିରୁ ଓହ୍ଲାଇବା ମାତ୍ରକେ ତାଙ୍କୁ ଅଭ୍ୟର୍ଥନା କରିଥିଲି । ରଜାଙ୍କର ପୋଷାକ ଭିତରେ କଟିରେ

କାର୍ପାସ ଧୋତି, କାନ୍ଧରେ ଗୂଦର ଓ ଶିରରେ ବଡ଼ ପଗଡ଼ି । ଧୂନା ତାରରେ ଦର୍ଓଟି ମୋଡ଼ ଓ ଗୋଟିଏ ପାନା ଏରୂପ ଦର୍ଓଟି ଦୁଇ କାନରେ ଝୁଲୁଥିଲୁ । ଉଦ୍ର ମହିଳାମାନଙ୍କର ହାତଗଡ଼ିରେ ଥିବା ସୁନ୍ଦର ଅଳଙ୍କାର ସଦୃଶ ସୁନାର ପଦକଗୁଡ଼ିଏ ତାଙ୍କର ବେକରେ ଥିଲୁ । ବର୍ଷା ଅଭାବରୁ ଗୃଷର ଅବସ୍ଥା କଷ୍ଟର ହେବ, ଅତ୍ୟାଗୃଷୀ ମରହଟ୍ଟାମାନଙ୍କ ଉପରେ ଅଭିଶାପ ବର୍ଷଣ ଓ ଆମ୍ଭମାନଙ୍କ ମଧ୍ୟରେ ସମ୍ମାନ ପ୍ରଦର୍ଶନ ଇତ୍ୟାଦି ଅତି ସଂକ୍ଷିପ୍ତ ବାକ୍ୟାଳାପ ତାଙ୍କ ସହିତ ହୋଇଥିଲୁ । ମୁଁ ତାଙ୍କୁ ଦର୍ଓଟି ପିସ୍ତଲ ଉପହାର ଦେଇଥିଲି ।

୨୫ ତାରିଖ ମେ । ଏହିଠାରେ ନାଗପୁର ସଡ଼କ ଛାଡ଼ି ମହାନଦୀ ପାର ହେଲି । ସମ୍ବଲପୁରରେ ନ ପହଞ୍ଚିବାଯାଏ ଆଉ ବାଟରେ ମହାନଦୀ ମୋର ଦୃଷ୍ଟିଗୋଚର ହୋଇ ନ ଥିଲୁ । ନଦୀର ଅପର ପାରରେ ବୌଦ ରାଜ୍ୟ ୧୪ ମାଇଲ ବିସ୍ତୃତ । ଏହି ରାଜ୍ୟ ପର୍ବତମୟ ଓ ବନାକୀର୍ଣ୍ଣ ହେଲେ ମଧ୍ୟ ଅଧିକାରରେ ଆଣିବାର ଯୋଗ୍ୟ ନୁହେଁ । ମୋର ଗନ୍ତପଥ ଗୋଟିଏ ଶାଖା-ସଡ଼କ ହେଲେ ମଧ୍ୟ ପ୍ରକୃତ ପକ୍ଷରେ ସଡ଼କ ପଦବାଚ୍ୟ ନୁହେ । କାରଣ ଗୋଟିଏ ପାଲ୍‌କି ଏଥିରେ ଯାଇ ପାରିବ ନାହିଁ । ପ୍ରଥମ ୯ ମାଇଲ ପଥ ପାହାଡ଼ ଭିତରେ ଯାଇଅଛି । ମୁଁ ଯେତେଗୁଡ଼ିଏ ପାହାଡ଼ ଅତିକ୍ରମ କରି ଆସିଥିଲି, ଏଗୁଡ଼ିକ ସେପରି ଉଚ୍ଚ ନୁହେ, ପୂର୍ବକଥିତ କ୍ଷୁଦ୍ରାକାର ବୃକ୍ଷସମୂହରେ ପୂର୍ଣ୍ଣ । ଆଉ ଗୋଟିଏ ପ୍ରଶସ୍ତ ରାସ୍ତା ଥିବାର ଜାଣି ପାରି ଦୂତକୁ ବିଶ୍ୱାସଘାତକ ବୋଲି ସନ୍ଦେହ କରି ତା ଉପରେ ଅସନ୍ତୁଷ୍ଟ ହେଲି । ବ୍ୟାଘ୍ରଭଲ୍ଲୁକପୂର୍ଣ୍ଣ ଗୋଟିଏ ଭୀଷଣ ବନରେ ରାତ୍ରିଯାପନ କରିବାକୁ ପଡ଼ିଥିଲୁ । ପରଦିନ ସକାଳେ ବୌଦରାଜ୍ୟ ଛାଡ଼ି ରେଢ଼ାଖୋଲ (Landacole) ରାଜ୍ୟରେ ପ୍ରବେଶ ହେଲି । ଏହି ରାଜ୍ୟର ପ୍ରଥମ ଗ୍ରାମ କୁଚିମୂଳ*ରେ (Koocheemool) ପହଞ୍ଚି ସେଠାରୁ କୁଗୁଲି* ପହଞ୍ଚିବାଯାଏ ଦେଖିଲି

* କୁଚିମୂଳ ଓ କୁଗୁଲି ଗ୍ରାମଦ୍ୱୟର ଅସ୍ତିତ୍ୱ ମାନଚିତ୍ରରେ ମିଳେ ନାହିଁ ।

ଯେ ଗ୍ରାମଗୁଡ଼ିକ ବେଶ ଜନାକୀର୍ଣ୍ଣ । ତତ୍‌ପରେ ରାସ୍ତା ପୁଣି ପାହାଡ଼ ଭିତରେ ପଡ଼ିଥିଲା ।

୨୨ ତାରିଖ ମେ । ଆଜି ବୃଗୁଲଠାରେ ରାତ୍ରିଯାପନ କଲି । ସକାଳ ହେଉଥାଏ, ଏହି ସମୟରେ ଦୁଇଟା ଭାଲୁ ହୁଆଁଫେଣ ମୋର ତମ୍ବୁ ଆଡ଼କୁ ଆସୁଥିବାର ଚିତ୍କାର ଶୁଣି ଚମକି ଉଠିଲି । ମାତ୍ର ପହରୀବାଲା ଗୁଳି କରିବାରୁ ସେଗୁଡ଼ିକ ପଳାଇଗଲେ । ଏହି ବନ୍ୟ ଜନ୍ତୁଗୁଡ଼ିକ ଲୋକମାନଙ୍କଦ୍ୱାରା ଉତ୍ତ୍ୟକ୍ତ ହେଲେ କେବେ କେବେ ସେମାନଙ୍କୁ ବୋହି ନିଅନ୍ତି, ତାଙ୍କର ଉହାସଦୃଶ ଜିହ୍ୱରେ ଗୃଢ଼ିଗୃଢ଼ି ଦେହର ମାଂସ କାଢ଼ି ପକାନ୍ତି ଓ ଶରୀରର କୋମଳ ଅସ୍ଥି ନଷ୍ଟ କରି ଦିଅନ୍ତି । ତତ୍ପରେ ବନ ମଧ୍ୟରେ ଅନ୍ୟ ବନ୍ୟପଶୁର ଶିକାର ନିମିତ୍ତ ଅସହାୟ ଅବସ୍ଥାରେ ଛାଡ଼ି ଚାଲି ଯାଆନ୍ତି । ମୁଁ ଥରେ ଏହିପରି ଗୋଟିଏ ଲୋକକୁ ଭିକ ମାଗି ବୁଲୁଥିବାର ଦେଖିଥିଲି, ତାହାର ହାତର ଗଣ୍ଠିଗୁଡ଼ିକ ଅକର୍ମଣ୍ୟ ହୋଇ ଯାଇଥିଲା, ତେଣୁ ସେ ଖଙ୍ଗୁଳିଆ ଅତି କଷ୍ଟରେ ଦିନାତିପାତ କରୁଥିଲା । ସେ ମୋତେ ଏହିପରି କହିଥିଲା; ତାହାର ବଡ଼ିଗୁଡ଼ିକୁ ଭାଲୁଟିଏ ଖେଦିବାକୁ ଚେଷ୍ଟା କରିବାରେ ଭାଲୁ ତାକୁ ଆକ୍ରମଣ କରି ବୋହି ନେଲା ଓ ତା ପ୍ରତି ପୂର୍ବୋକ୍ତ ପ୍ରକାର ବ୍ୟବହାର କଲା । ତାହାର ଭାଇ ବନ୍ଧୁ ଅନ୍ୱେଷଣ କରି ଜଙ୍ଗଲ ମଧ୍ୟରେ ତାକୁ ପର ଦିନ ପାଇ ଘରକୁ ବୋହି ଆଣିଲେ ।

୨୮ ତାରିଖ ମେ । ସକାଳେ ମୋର ଭୃତ୍ୟମାନେ କହିଲେ ଯେ, କଲ୍ଲାଦାରକୁ କିଛି ଉପହାର ନ ଦେଲେ ସେ ମୋତେ ଏଠାରୁ ଯିବାକୁ ଦେବ ନାହିଁ । **ସର୍ଦ୍ଦାର ଖାଁ** ଗତ ରାତ୍ରିରେ କଲ୍ଲାଦାର ଘରେ ଆହାର କରିଥିଲା ଏବଂ ମୋ ପ୍ରତି ବଳପ୍ରୟୋଗ କରିବା ନିମିତ୍ତ ତାକୁ ଉତ୍ତେଜିତ କରିଥିଲା । ଏହି ଉଦ୍ୟମରେ କୃତକାର୍ଯ୍ୟ ହେବା ନିମିତ୍ତ ସେ ପ୍ରାୟ ୧୦୦ ଧନୁର୍ଦ୍ଧାରୀ ଲୋକ ମଧ୍ୟ ସଂଗ୍ରହ କରିଥିଲା । ଏହି ସାମାନ୍ୟ ଲୋକଙ୍କୁ ତୁଚ୍ଛ ଜ୍ଞାନ କରି ଓ ଏପରି ମାନହାନିକର କାର୍ଯ୍ୟରେ ସମ୍ମତ ହେଲେ

ସମ୍ବଲପୁରରେ ମୋର ସମ୍ମାନ ହ୍ରାସ ହେବ ଭାବି ମୋର ସିପାହୀମାନଙ୍କୁ ମାଡ଼ କରାଇ ନେଇ ଗ୍ରାମର ସମ୍ମୁଖରେ ଶ୍ରେଣୀବଦ୍ଧ କରି ଠିଆ କରାଇ ଦେଲି । ଆଉ କଣ୍ଟାଦାରକୁ କହି ପଠାଇଲି ଯେ, ମୋର ସିପାହୀମାନେ ଯାହା କ୍ଷତି କରିବେ, ତାହାର କ୍ଷତିପୂରଣ ମୁଁ ଦେବି, ମାତ୍ର ମୋର ଯିବାରେ ଯଦି ବାଧା ପଡ଼େ, ତେବେ ଗ୍ରାମର ସମସ୍ତ ଗୃହ ପୋଡ଼ି ଭସ୍ମୀଭୂତ କରିଦେବି । ଏହି ଭୟପ୍ରଦର୍ଶନର ତାତ୍‌କାଳିକ ଫଳ ମିଳିଥିଲା । ସେ ମୋତେ ଅଗ୍ରସର ହେବାରେ ଆଉ ଉତ୍‌ପୀଡ଼ନ କଲା ନାହିଁ । ଏହା ପରେ ୯ ମାଇଲ ଯାଇ ସମ୍ବଲପୁର ରାଜ୍ୟରେ ଉପସ୍ଥିତ ହେଲି । ଯେଉଁ ସବୁ ରାଜ୍ୟ ମଧ୍ୟରେ ଆସିଥିଲି, ଏହା ସେହିପରି ବନାକୀର୍ଣ୍ଣ ଓ ପାର୍ବତ୍ୟମୟ । **ଜୁଜୁମସୁରା**[1](Joojoomusoora) ଗ୍ରାମରେ ରାତ୍ରି ଯାପନ କଲି । ପରଦିନ ୨୯ ତାରିଖରେ ମଧ୍ୟ ଏହିଠାରେ ରହି ରାଜାଙ୍କ ଛାମୁରେ ମୋର ଆସିବାର ସମ୍ବାଦ ଦେବା ନିମିତ୍ତ ଆଗରୁ ରାଜକର୍ମଚାରୀକୁ ରାଜଧାନୀକୁ ପଠାଇଦେଲି । ସେ ଜଣେ ଲୋକ ହାତରେ ମୋତେ ଖବର ଦେଲା ଯେ ରାଜା ମୃତ୍ୟୁମୁଖରେ ପତିତ ହୋଇଅଛନ୍ତି, ମାତ୍ର ତାଙ୍କର ପୁତ୍ର **ଅଭି ସିଂ**[2] ( Obhi Sing ) ରାଜପଦରେ ଅଭିଷିକ୍ତ ହୋଇଅଛନ୍ତି ଓ ସେ ମୋତେ ଭେଟିଲେ ବିଶେଷ ଆନନ୍ଦ ଲାଭ କରିବେ । ସେ ଇଚ୍ଛାପ୍ରକାଶ କରିଥିଲେ ଯେ, ମୁଁ ପରଦିନ **ମନିସୁର**[3] ( Monisur ) ପର୍ଯ୍ୟନ୍ତ ଯାତ୍ରା କରିବି । ଏହା ସମ୍ବଲପୁରଠାରୁ ୫ ମାଇଲ ଦୂରବର୍ତ୍ତୀ । ସେଠାରେ ରାଜାଙ୍କର ଭାଇ ଆସି ମୋ ସହିତ ସାକ୍ଷାତ୍ କରିବେ ।

୩୦ ତାରିଖ ମେ । ମୁଁ ତଦନୁସାରେ କାର୍ଯ୍ୟ କଲି ଓ ତାଙ୍କ ଅନୁରୋଧମତେ ଗୋଟିଏ ଆମ୍ବ ବଗିଚାରେ ତମ୍ବୁ ପକାଇଲି । ସେଦିନ ଅସହ୍ୟ ଗରମ ହୋଇଥିଲା । ଏପରି ଗରମ ହେବାଟା ଋତୁପରିବର୍ତ୍ତନର

---

୧ । ଅଧୁନା ଜୁଜୁମୁରା । ୨ । ଅଜିତ ସିଂହ । ୩ । ଅଧୁନା ମଣେଶ୍ୱର ।

ଲକ୍ଷଣ । ସକାଳ * ୯ଟା ବେଳେ ଭୟଙ୍କର ତୋଫାନ ଉଠିବା ସଙ୍ଗେ ସଙ୍ଗେ ବୃଷ୍ଟି ଓ ବଜ୍ରପାତ ହେଲା । ମୋର ଗୋଟିଏ କଳକା ବଡ଼ ତମ୍ବୁ ଥିଲା, ସେଥିରେ ଜିନିସ ପତ୍ର ରଖା ହେଉଥିଲା । ସିପାହୀ ଭୃତ୍ୟ-ମାନେ ତହିଁରେ ଅସ୍ତ୍ର ଆଶ୍ରୟ ନେଇଥିଲେ ଓ ତାହାକୁ ଟାଣି ବାନ୍ଧି ରଖିଲେ । ତମ୍ବୁ ଖୁଣ୍ଟର ଅଗରେ ଥିବା ଲୁହା ଗୁଜ ଓ ପହରୀବାଲା ବନ୍ଧୁକର ସଙ୍ଗିନ ଉପରେ ବଜ୍ରପାତ ହେଲା । ପହରୀବାଲା ତତ୍କ୍ଷଣାତ୍ ମରିଗଲା । ବଜ୍ରାଗ୍ନି ତମ୍ବୁଖୁଣ୍ଟ ମଧ୍ୟରେ ଆସି ତଳେ ଥିବା ଗୋଲି ବାରୁଦରେ ଲାଗିବାରୁ ତାହା ଫୁଟି ଉଠିଲା । ତମ୍ବୁ ମଧ୍ୟରେ ଯେଉଁମାନେ ଠିଆ ହୋଇଥିଲେ, ସମସ୍ତେ ଅଜ୍ଞାନ ହୋଇ ପଡ଼ିଲେ. ମାତ୍ର ଶୋଇଥିବା ଲୋକମାନେ ସେତେ ଅଧିକ ଆଘାତ ପାଇ ନ ଥିଲେ । ତମ୍ବୁର ତଳେ ସାର୍ଜ କନାର ଅସ୍ତର ଥିବାରୁ ଜିନିସପତ୍ରରେ ନିଆଁ ଲାଗିଲା ଓ ଅଜ୍ଞାନ ହୋଇଥିବା ଲୋକମାନଙ୍କୁ ପୋଡ଼ି ପକାଇଲା । ଯେଉଁମାନେ ଅର୍ଦ୍ଧମୃତ ହୋଇଥିଲେ, ତାଙ୍କ ଭିତରେ ଘୋର ବେଦନାର ରୋଳ ଉଠିଲା । ତୋଫାନରେ ବତି ନିଭିଯାଇଥିଲା । ମୁଁ ଅତି ଅସୁସ୍ଥ ହୋଇ ଯେଉଁ ଅନ୍ଧାରିଆ ତମ୍ବୁରେ ପଡ଼ିଥିଲି, ସେମାନେ ସେଠାକୁ ଆସିଲେ । ଅତି କଷ୍ଟରେ ଗୋଟିଏ ଆଲୁଅ ଜଳାଇଲି । ମାତ୍ର ଆଲୁଅ ଆସିବାରୁ ଯେଉଁ ବୀଭତ୍ସ ଦୃଶ୍ୟ ଦେଖିଲି, ତାହା ମୋର ଚକ୍ଷୁରେ କେବେ ହେଲେ ପ୍ରତିଭାତ ହୋଇ ନ ଥିଲା । କିଂଶସଂଖ୍ୟକ ହତଭାଗ୍ୟ ଲୋକଙ୍କର କୃଷ୍ଣଚର୍ମ ଉପରେ ଅଗ୍ନିର କୃଷ୍ଣଚିହ୍ନ ସ୍ପଷ୍ଟ ଦୃଷ୍ଟ ହେଉଥିଲା । ସେମାନେ ମୋର ବିଛଣାର ଚତୁର୍ଦ୍ଦିଗରେ ଉଲଙ୍ଗ ଅବସ୍ଥାରେ ଠିଆ ହୋଇ ଅତିଶୟ କାତରକଣ୍ଠରେ ଅସହ୍ୟ ବେଦନାର ଉପଶମ ନିମିତ୍ତ ପ୍ରାର୍ଥନା କରୁଥିଲେ । ବହୁକ୍ଷଣ ଅସୁସ୍ଥତା ହେତୁ ପରିକ୍ଳାନ୍ତ ଅନ୍ୟ ଏକ ମନୁଷ୍ୟ ପକ୍ଷରେ ଏ ଦୁର୍ଘଟନା କିରୂପ ମର୍ମନ୍ତୁଦ ହୋଇଥିବ, ତାହା ପରେ ଅନୁମାନ କରି ପାରିବେ କି ? ଯନ୍ତ୍ରଣାର ଆଧିକ୍ୟ ଲୋକମାନଙ୍କୁ ମର୍ଯ୍ୟାଦା ଲଙ୍ଘନ କରାଇଥିଲା । ଦୁଇ

---

* ପରିବର୍ତ୍ତୀ ବର୍ଣ୍ଣନାରୁ ସନ୍ଧ୍ୟା ହେବା ସମ୍ଭବ ।

ଜନ ଜଣ ଲୋକ ମୋ ବିଛଣା ଉପରେ ପଡ଼ିଯାଇଥିଲେ । ଏତେବେଳକୁ ତମ୍ବୁଭିତରେ ଜୋଡାବୁଡ଼ା (ବୋଇଠିଏ) ପାଣି ଠିଆ ହୋଇଥିଲା । ମୁଁ ଉପୁର ହୋଇ ପୋଡ଼ା ସ୍ଥାନରେ ତେଲ ଲଗାଇ ଦେଲି । ଉପୁରେ ଅଧମ ଚେଅର ଉପରେ ବସି ସେ ଦିନର ଭୟଙ୍କର ରାତି କଟାଇଥିଲି । ମୋର ଅନୁଚର ସେ ହତଭାଗ୍ୟଗୁଡ଼ିକ କେବଳ ଚିତ୍କାର ଓ ଆର୍ତ୍ତନାଦ କରୁଥିଲେ । ସକାଳ ନ ହେଉଣୁ ତାଙ୍କ ଭିତରୁ ୯ ଜଣ ଓ ପରଦିନ ୭ ଜଣ ପ୍ରାଣ ବିସର୍ଜନ କଲେ ।

ପ୍ରଭୋ ! ଭବିଷ୍ୟତର ପ୍ରତ୍ୟେକ ବିପଦରେ ସର୍ବାଗ୍ରେ ମୋର ସର୍ବନାଶ ବାଞ୍ଛନୀୟ, ମାତ୍ର ଏପରି ଦୁର୍ଘଟନାର ଚକ୍ରାରେ ପଡ଼ି ବିଷାଦର କାଳମାମନ୍ୟୁ ନରକଯନ୍ତ୍ରଣା ଭୋଗ ଆଦୌ ବାଞ୍ଛନୀୟ ନୁହେ, ମୋର ଏତିକି ପ୍ରାର୍ଥନା ପୂରଣ କର !

ଏହି ସମୟରେ ମୋର ଗୁରୁତର ଦଶା ଉପସ୍ଥିତ ହୋଇଥିଲା । ବିଶ୍ୱାସଘାତକତାର ସୁବିଧତ କ୍ଷେତ୍ରକୁ ମୁଁ ଯାଉଥିଲି । ଏଠାରେ କାପ୍ଟେନ ମୋଲକ (Captain Mollock) ୨୪ ଘଣ୍ଟା ବଞ୍ଚି ପାରି ନ ଥିଲେ । ମୋର ଶରୀର ଦୁର୍ବଳତାଜନିତ ଜ୍ୱରରେ ଅତି କ୍ଷୀଣ ହୋଇଥିଲା ଓ ପାଖରେ ଚିକିତ୍ସାର ବ୍ୟବସ୍ଥା ଆଦୌ ନ ଥିଲା । ସୁସ୍ଥ ଅବସ୍ଥାରେ ଥାଇ ପ୍ରକାଶ୍ୟ ଆକ୍ରମଣରେ ନିଜକୁ ରକ୍ଷା କରି ପାରିବା ନିମିତ୍ତ ସିପାହୀ ଓ ଭୃତ୍ୟର ସଂଖ୍ୟା ଅପ୍ରଚୁର ଥିଲେ ସୁଦ୍ଧା ବିଶ୍ୱାସଘାତକ ହସ୍ତରୁ ରକ୍ଷା ପାଇବା ଲାଗି ସେମାନଙ୍କ ଉପରେ ମୁଁ ନିର୍ଭର କରିଥିଲି; ମାତ୍ର ସେମାନେ କ୍ଷୁଣ୍ଣ ମନରେ ସାମରିକ ଗମନ କରିବା ପରିବର୍ତ୍ତେ ଦୁଇଜଣଙ୍କ କାନ୍ଧ ଉପରେ ଖଟିଆରେ ବୁହା ହୋଇ ନୀତ ହୋଇଥିଲେ । ପ୍ରାୟ ସମସ୍ତ ଲୋକମାନେ ପୋଡ଼ି ହୋଇଥିଲେ । ସେଥିରୁ ଅଳ୍ପସଂଖ୍ୟକ ମୋ ସହିତ ସହରକୁ ଅସି କିଛିଦିନ ପରେ ସେଠାରେ ପ୍ରାଣବିସର୍ଜନ କଲେ । ଏହି ଘଟନାଗୁଡ଼ିକ ନାନାପ୍ରକାର ଭୟ ଉପୁଜାଇ ମୋର ସ୍ୱାସ୍ଥ୍ୟହୀନ ହୋଇଥିଲା । କିନ୍ତୁ ସମ୍ବଲପୁରର ଅବସ୍ଥା ଯାହା ଦେଖିଲି, ସେଥିରେ ମୋର ଅନେକ ବିପଦ କଟିଗଲା ।

୩୧ ତାରିଖ ୧ମେ । ସମ୍ବଲପୁର ରାଜ୍ୟରେ ପଦାର୍ପଣ କରିବା ନିମିତ୍ତ ରାଜାଙ୍କର ଭାଇ **ଜିତ ସିଂହ**[୧] (Jite Sing) ଆସି ମୋତେ ଅଭିନନ୍ଦନ କରିଥିଲେ । ମୋର ବଙ୍ଗଳାଙ୍ଗ ଅନୁଚରମାନଙ୍କୁ ଦେଖି ସେ ମର୍ମାହତ ହୋଇଥିଲେ ଓ ମୋତେ ଲୋକ ଯୋଗାଇ ସାହାଯ୍ୟ କରିଥିଲେ । ଲୋକମାନେ ଖଟିଆ ଉପରେ ବିଛଣା ପକାଇ ମୋର ଅନୁଚରମାନଙ୍କୁ ମୂର୍ଚ୍ଛାର ସଦୃଶ ସହରକୁ ବୋହି ନେଇଥିଲେ । ମୋର ନଗର ପ୍ରବେଶ ବ୍ୟାପାର ସୁସଜ୍ଜିତ ଶୋଭାଯାତ୍ରା ପରିବର୍ତ୍ତିରେ ଶବଯାତ୍ରା ସ୍ୱରୂପ ହୋଇଥିଲା । ୫ ମାଇଲ ଦୂରବର୍ତ୍ତୀ ଏକ ସ୍ଥାନରେ ମୋର ବାସ ନିମିତ୍ତ ରାଜା ବନ୍ଦୋବସ୍ତ କରିଥିଲେ । ଦୁର୍ଗର ବହିର୍ଭାଗ ଓ ମୃତ୍ତିକା-ପ୍ରାଚୀରର କୋଣସଂଲଗ୍ନ ନଗରର ଉପକଣ୍ଠରେ ଏହା ଅବସ୍ଥିତ ଥିଲା ଓ ୨୦୦ ଗଜ ପରିମିତ ବାହୁବିଶିଷ୍ଟ ବିଷମବାହୁ ତ୍ରିଭୁଜାକାର ଭୂମି ଉପରେ ନିର୍ମିତ ହୋଇଥିଲା । ଏହାର ଦୁଇ ପାର୍ଶ୍ୱ ଗଡ଼ର ପରିଖା ଓ ଉଚ୍ଚ ପ୍ରାଚୀରଦ୍ୱାରା ପରିବେଷ୍ଟିତ ଓ ସହରଠାରୁ ୧୦ ଫୁଟ ଏକ ପ୍ରାଚୀରଦ୍ୱାରା ବିଚ୍ଛିନ୍ନ ଥିଲା । ଯେଉଁ ଅଂଶଟି କେବଳ ମୋ ଉଦ୍ଦେଶ୍ୟରେ ନିର୍ବାଚିତ ହୋଇଥିଲା, ତାହାର ଚତୁଃପାର୍ଶ୍ୱରେ ମଧ୍ୟ ପ୍ରାଚୀର ଥିଲା । ତନ୍ମଧ୍ୟରେ ଅଶ୍ୱଶାଳାରୂପେ ବ୍ୟବହୃତ ଦୁଇଟି ଗୃହ ଥିଲା । ମୁଁ ଏଠାରେ ମୋ ସକାଶେ ଓ ସୁସ୍ଥ ଅନୁଚରମାନଙ୍କ ସକାଶେ ଗୋଟିଏ ଛପର ଘର ନ କରିବାଯାଏ ତମ୍ବୁ ପକାଇଥିଲି ।

ମୁଁ ଦେଖିଲି ଯେ ରାଜାଙ୍କର ମୃତ୍ୟୁଦିବସାବଧି ଶାସନବିପର୍ଯ୍ୟୟ ହେତୁ ସହରରେ ଭୀଷଣ ବିଶୃଙ୍ଖଳା ଉପସ୍ଥିତ ହୋଇଥିଲା । ଏହା ବିଶଦରୂପେ ବୁଝାଇବା ନିମିତ୍ତ ଗତ ତିନ ବର୍ଷର ଇତିହାସ ବିବୃତ କରୁଅଛି ।

୧୭୬୩ ଖ୍ରୀଷ୍ଟାବ୍ଦରେ **ଅଜିତ ସିଂହ** (Ajeet Sing) **ରାଜା** ଓ **ଦକ୍ଷିଣରାୟ୍** (Deccan Roy) **ଦେବାନ** ଥିଲେ । ରାଜାଙ୍କର

---

୧ । ଜୟନ୍ତ ସିଂହ ।

ଆଳସ୍ୟ ହେତୁ ଦକ୍ଷିଣରାୟ ସୁବିଧା ଓ ସୁଯୋଗ ପାଇ ନିଜର ପ୍ରାଧାନ୍ୟ ଏପରି ବଢ଼ାଇ ନେଇଥିଲେ ଯେ, ନିଜର ଇଚ୍ଛାନୁସାରେ ସମସ୍ତ ରାଜକାର୍ଯ୍ୟ ଚଳାଉଥିଲେ । ଅବଶେଷରେ ରାଣୀ ବର୍ଣ୍ୟତାର ଅବସ୍ଥା ରାଜାଙ୍କୁ ବୁଝାଇଦେଲେ । ତହୁଁ ରାଜା ଗୋଟିଏ ଗୁପ୍ତଦଳ ସୃଷ୍ଟି କଲେ; କାରଣ ଦେବାନ ଏତେଗୁଡ଼ିଏ ଗ୍ରାମ ନିଷ୍କର ଭୋଗ ପାଉଥିଲେ ଯେ, ରାଜା ତାଙ୍କୁ ପ୍ରକାଶ୍ୟ ଭାବରେ ଆକ୍ରମଣ କରିବାକୁ ସାହସୀ ହେଉ ନ ଥିଲେ । ରାଜତନ୍ତ୍ରର ରୀତି ଅନୁସାରେ ଗୁପ୍ତହତ୍ୟାର ବିଧାନ ଶ୍ରେଷ୍ଠ ବୋଲି ବିବେଚିତ ହେଉଥିଲା । ଏହିପରି ଗୁପ୍ତହତ୍ୟା ଫଳରେ ହତ ବ୍ୟକ୍ତିର ଗୃହ-ସମ୍ପତ୍ତି ସହିତ ବନ୍ଧୁ ଗୃହ ଲୁଣ୍ଠିତ ହେଲେ ସ୍ୱାର୍ଥପର ଲୋକେ ତହିଁରେ ଅଂଶୀଦାର ହେବାର ଜାଣି ରାଜାଙ୍କର ଏହି କାପୁରୁଷୋଚିତ ପରାମର୍ଶରେ ସହାୟ ହୋଇଥିଲେ । ଜୁନ ମାସ ୧୬ ତାରିଖରେ ରାଜାଙ୍କର କୂଟାଦେଶ ହୋଇଥିଲା ଯେ, ଦକ୍ଷିଣରାୟ ବ୍ୟତୀତ ସମସ୍ତ ଲୋକେ ଦରବାର କକ୍ଷ ପରିତ୍ୟାଗ କଲେ ରାଣୀ ସେହି କକ୍ଷ ଭିତରେ ପୂଜାର୍ଥ ମନ୍ଦିରାଭିମୁଖରେ ଯିବା ସମୟରେ ଦେବାନଙ୍କ ସହିତ ଆଳାପ କରି ଯିବେ । ଏଥିରେ କୌଣସି ଅନିଷ୍ଟ ଆଶଙ୍କା ନ କରି ଦେବାନ ରାଣୀଙ୍କ ପ୍ରତୀକ୍ଷାରେ ସେଠାରେ ବସି ରହିଲେ ।

ଉଦ୍ଦେଶ୍ୟସିଦ୍ଧି ନିମନ୍ତେ ସେଠାରେ ଲୁକ୍କାୟିତ ଆଠ ଦଶ ଜଣ ଦୁର୍ବୃତ୍ତ ଲୋକ ହଠାତ୍ ଉପସ୍ଥିତ ହୋଇ ତାଙ୍କୁ ଖଣ୍ଡବିଖଣ୍ଡ କରି କାଟି ପକାଇଲେ । ତାଙ୍କର ଗୃହ ସମ୍ପତ୍ତି ଲୁଣ୍ଠନ କରିବା ନିମନ୍ତେ ସମ୍ବାଦ ପ୍ରଚାରିତ ହୋଇଥିଲା । ଗୃହୁଁ ଗୃହୁଁ ଲୋକମାନେ ଲୁଣ୍ଠନକର୍ମରେ ରତ ହୋଇଥିଲେ । ଯେତେବେଳେ ରାଜପକ୍ଷ ଲୋକେ ଲୁଣ୍ଠିତ ଦ୍ରବ୍ୟାଦିର ଅଂଶ ଗ୍ରହଣ କରିବାକୁ ପ୍ରେରିତ ହୋଇଥିଲେ, ସେତେବେଳକୁ ଆଉ କିଛି ନ ଥିଲା । **ପିଲୋରାୟ** (Peelo Roy) ଏହି ହତ୍ୟାକାଣ୍ଡର ନାୟକ ଥିଲେ । ତେଣୁ କାଳେ ସେ ଦେବାନ ହୋଇ ପ୍ରଭୁତ୍ୱ ବିସ୍ତାର କରିବେ, ଏହି ବିଦ୍ୱେଷ ପୋଷଣ କରି ନଅର ଗନ୍ତାଇତ

**କିଶୋରୀ** (Kisoree) ଦେବାନପଦ ଖାଲି ରଖିବା ନିମିତ୍ତ ଅଜିତ ସିଂହ ରଜାଙ୍କୁ ପ୍ରବର୍ତ୍ତାଇଥିଲେ । କାରଣ ସେ ଜାଣିଥିଲେ ଯେ, ରଜାଙ୍କର ଆଳସ୍ୟପ୍ରବଣ ଚିତ୍ତବୃତ୍ତି ଜାଗରୂକ ହେବା ମାତ୍ରକେ ରାଜ୍ୟଶାସନ ଯନ୍ତ୍ର ଦେବାନହସ୍ତରେ ଶୃଙ୍ଖଳିତ ହେବ । ତାଙ୍କର ଏହି ଧାରଣା ସତ୍ୟାଶ୍ରିତ ଥିଲା । କାରଣ ରଜାଙ୍କର ଅଫିମ ନିଶା ଧରିବା ମାତ୍ରକେ ଦକ୍ଷିଣ ରାୟ ସଦୃଶ କିଶୋରୀ ମଧ୍ୟ ପ୍ରତାପାନ୍ୱିତ ହୋଇ ଉଠିବେ । ଦେବାନ କର୍ମ ଓ ପିଲ୍ଲେ ରାଏଙ୍କ ଭିତରେ କିଶୋରୀ ପ୍ରତିବନ୍ଧକ ଥିବାର ଜାଣି ସେ କିଶୋରୀଙ୍କୁ ରଜାନୁଗ୍ରହ ଭୋଗ କରିବା ନିମିତ୍ତ ବହୁକାଳ ସମୟ ଦେଇ ନ ଥିଲେ । ତାଙ୍କ କର୍ତ୍ତୃକ ନିଯୁକ୍ତ ଜଣେ ଆତତାୟୀ ହସ୍ତରେ ରାଜ-ଭବନରେ ସିଂହଦ୍ୱାର ନିକଟରେ କିଶୋରୀଙ୍କର ମସ୍ତକ ବିଚ୍ଛିନ୍ନ ହୋଇଥିଲା ।

ଏହିରୂପେ ପ୍ରଧାନ ପ୍ରତିବନ୍ଧକ ଅପସାରିତ କରାଇ ପିଲ୍ଲେ ରାୟ ଦେବାନପଦରେ ନିଯୁକ୍ତ ହୋଇଥିଲେ ଓ ରଜା ଅଜିତ ସିଂହ ପୁନର୍ବାର ପ୍ରାଧାନ୍ୟହୀନତାର ଗହ୍ୱର କୂପରେ ନିମଜ୍ଜିତ ହେଲେ ।

୧୭୬୪ ଖ୍ରୀଷ୍ଟାବ୍ଦରେ କିଶୋରୀଙ୍କ ଆତ୍ମୀୟ **ଆକବର** ପିଲ୍ଲେ ରାୟଙ୍କ ଉନ୍ନତିରେ ନିଜର ବିପଦ ଆଶଙ୍କା କରି ଅଜିତ ସିଂହଙ୍କଠାରେ ଆବେଦନ କଲେ ଯେ, ଦକ୍ଷିଣରାୟ ସଦୃଶ ବିଜ୍ଞ ଲୋକର ଶୃଙ୍ଖଳ ଉନ୍ମୋଚନକାରୀଙ୍କ ପକ୍ଷରେ ପିଲ୍ଲେ ରାୟ ସଦୃଶ ଅଧମ ବ୍ୟକ୍ତିର ଶାସନର ବଶ୍ୟତା ସ୍ୱୀକାର କରିବା ଅତିଶୟ ଘୃଣ୍ୟ ବ୍ୟାପାର ଅଟେ । ଏହି ଆବେଦନ ଏପରି କାର୍ଯ୍ୟକାରୀ ହୋଇଥିଲା ଯେ, ରଜା ତାଙ୍କୁ ହତ୍ୟା କରିବା ପାଇଁ ମୌଖିକ ଆଦେଶ ଦେଇଥିଲେ । ମାତ୍ର ଦେବାନ ପ୍ରହରୀ ରଖି ଚଳୁଥିବାରୁ ୨୭ ତାରିଖ ଅଗଷ୍ଟ ପର୍ଯ୍ୟନ୍ତ କୌଣସି ସୁବିଧା ମିଳି ନ ଥିଲା । ସେଦିନ ଗୋଟିଏ ବଡ଼ ପର୍ବ ପଡ଼ିଥିଲା । ସହରର ସମସ୍ତ ଗଣ୍ୟ ମାନ୍ୟ ଲୋକମାନେ ରଜାଙ୍କୁ ଭେଟି ପର୍ବୋପଲକ୍ଷରେ ହେଉଥିବା ନୃତ୍ୟ ଦେଖୁଥିବାବେଳେ ପିଲ୍ଲେ ରାୟ ଉଠି ଆସିବାରୁ ଆକବର ଦୁଇ ତିନି ଜଣ ଆତତାୟୀଙ୍କୁ ତାଙ୍କ

ପଛେ ପଛେ ପଠାଇଥିଲେ; ସେମାନେ ଲୋକଗହଳ ମଧ୍ୟରେ ତାଙ୍କୁ ହତ୍ୟା କରିଥିଲେ । ମୁହୂର୍ତ୍ତି ମଧ୍ୟରେ କକ୍ଷ ଜନଶୂନ୍ୟ ହୋଇଗଲା; ପ୍ରତ୍ୟେକେ ମହାନନ୍ଦରେ ତାଙ୍କର ଗୃହ ଲୁଣ୍ଠନ କରିବାକୁ ଧାବମାନ ହୋଇଥିଲେ ।

ଆକବର ପୂର୍ବାଧିକାରୀମାନଙ୍କର ସମସ୍ତ କ୍ଷମତା ପାଇ ପ୍ରଭୁଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଦେବାନକର୍ମରେ ନିଯୁକ୍ତ ଥିଲେ । ୧୭୬୬ ଖ୍ରୀଷ୍ଟାବ୍ଦରେ ମେ ମାସର ଆଦ୍ୟଭାଗରେ **ଅଜିତ ସିଂହ** ପ୍ରାଣତ୍ୟାଗ କଲେ । ତାଙ୍କ ମୃତ୍ୟୁରେ ବିଷପ୍ରୟୋଗର ସନ୍ଦେହ ଯେ ନ ଥିଲା, ଏମନ୍ତ ନୁହେ । ଏହା ମଧ୍ୟ ପ୍ରକାଶ ପାଇଥିଲା ଯେ, ସେ ଆକବରଙ୍କର ସର୍ବନାଶ କରିବାକୁ କୃତସଙ୍କଳ୍ପ ହୋଇଥିଲେ ଓ ତାଙ୍କର ପୁତ୍ର ଅଭିସିଂହଙ୍କୁ ତାଙ୍କର ବିନାଶ ନିମିତ୍ତ ପରାମର୍ଶ ଦେଇଥିଲେ । ପିତାଙ୍କର ଦାହକ୍ରିୟା ଶେଷ ହେବା ମାତ୍ରକେ ଅଭିସିଂହ ତାଙ୍କୁ ରାଜକୀୟ ମୁଦ୍ରା ଫେରାଇ ଦେବାକୁ ଅସମ୍ମତ ହୋଇ **କୃଷ୍ଣଗଡ଼ ମାଲିକଙ୍କୁ** (Kissun Bur Mullic) ଦେଇ-ଥିଲେ । ଆକବର ରାଜଧାନୀର ସୈନ୍ୟାଧ୍ୟକ୍ଷ ଥିବାରୁ ସହର ମଧ୍ୟସ୍ଥିତ ଗୃହକୁ ପ୍ରତ୍ୟାବୃତ୍ତ ହୋଇ ନିଜକୁ ସୁରକ୍ଷିତ କରି ଗୃହମଧ୍ୟରେ ଆବଦ୍ଧ ରହିଲେ । ରାଜ୍ୟର ଏହି ବିଶୃଙ୍ଖଳ ଅବସ୍ଥାରେ ମୁଁ ଏଠାକୁ ଆସିଥିଲି ।

ଜୁନ ମାସ ୨ ତାରିଖରେ ରାଜାଙ୍କ ସହିତ ଦେଖା କରିବାକୁ ଯାଇଥିଲି । ଅଭିସିଂହ ମୋତେ ରାଜାଙ୍କଠାରେ ଚିହ୍ନାଇ ଦେଇଥିଲେ । ରାଜାଙ୍କ ମନ୍ତ୍ରୀ କୃଷ୍ଣଗଡ଼ ମାଲିକ ସେଠାରେ ଉପସ୍ଥିତ ଥିଲେ । ସେ ମୋତେ କହିଲେ ଯେ, ତାଙ୍କର ପ୍ରଭୁ ଅବିଳମ୍ବେ ମୋ ସହିତ ବ୍ୟବସାୟ ସମ୍ପର୍କରେ କଥୋପକଥନ କରିବେ । ରାଜଧାନୀରେ ରାଜାଙ୍କ କ୍ଷମତା ପ୍ରତି ଭ୍ରୂକ୍ଷେପ ନ କରିବା ଇତ୍ୟାଦି ଅନେକ କଥା ଆକବର ବିରୋଧରେ କହି ମୋଠାରୁ ସାହାଯ୍ୟ ପାଇବାର ଆଶା ପୋଷଣ କରୁଥିବାର ସୂଚନା ମଧ୍ୟ ଦେଇଥିଲେ । ମୁଁ ସବୁ ଶୁଣିଲି, ମାତ୍ର ଅଳ୍ପ କଥା କହିଲି । ରାଜା ଅଭିସିଂହଙ୍କର ବୟସ ମାତ୍ର ଷୋହଳ, ଦେଖିଲେ ଅତି ନିର୍ବୋଧ ବୋଲି

ମନେ ହୁଏ । ତାଙ୍କର ବଡ଼ ଅନ୍ତରଙ୍ଗଭାଇ ସେନାଧ୍ୟକ୍ଷ ଥିଲେ । ସେ ଯେପରି ବଳିଷ୍ଠ, ସେହିପରି ଉଗ୍ରମୂର୍ତ୍ତି । ରାଜାଙ୍କର ଅନୁଜ ଛତ୍ରସିଂହ ମଧୁରପ୍ରକୃତିର ଲୋକ ଓ ଅତିସରଳ ।

ରାଜା ପାଲଟା ସାକ୍ଷାତ କରିବାକୁ ଆସିଥିଲେ । ସେ ଦୁଇପଦ ମାତ୍ର କଥା କହିଥିଲେ, କିନ୍ତୁ ମୋର ପ୍ରଦତ୍ତ ଉପହାରଗୁଡ଼ିକ ପାଇ ବିଶେଷ ଆନନ୍ଦିତ ହେବାର ଅନୁମିତ ହେଲୁ । ଉପହାରଗୁଡ଼ିକ ଯଥା:— ୧ଯୋଡ଼ା ମଖମଲ, ୨ଯୋଡ଼ା ଥାନ, ଗୋଟିଏ ସାଫା, ୧ଯୋଡ଼ା ପିସ୍ତଲ, ଗୋଟିଏ ଆରଶି ଓ କେତେଗୁଡ଼ିଏ ସାଧାରଣ ଜିନିଷ । ପରଦିନ ରାତିରେ କୃଷ୍ଣଗଡ଼ ମାଲିକ ଆସି ନିବେଦନ କଲେ ଯେ, କାରବାର ସମ୍ବନ୍ଧରେ କଥାବାର୍ତ୍ତା ନ ହୋଇ ପାରିବାର ପ୍ରଧାନ କାରଣ ସହରର ଦୁରବସ୍ଥା ଓ ଆକବରର ବିଦ୍ରୋହ । ଏହା କହି ସାରି ସେ ଇଚ୍ଛା ପ୍ରକାଶ କଲେ ଯେ, ମୁଁ ଆକବରକୁ ଧରିବାପାଇଁ ସାହାଯ୍ୟ କରିବି । ଏ ପ୍ରସ୍ତାବରେ କୌଣସି ପରାମର୍ଶ ଦେବାକୁ ଅକ୍ଷମ ଥିବାର କହି ମୋର ଅଳ୍ପସଂଖ୍ୟକ ସୈନ୍ୟମାନଙ୍କର ଶୋଚନୀୟ ଦୁରବସ୍ଥା ବର୍ଣ୍ଣନ କରିଥିଲି । ରାଜବିଦ୍ରୋହୀ ଜନସଙ୍ଘ-ଦ୍ୱାରା ସହର ପ୍ରତିଦିନ ଶ୍ମଶାନାକାର ଧାରଣ କରୁଥିଲା । ତେଣୁ ମୋର ଲୋକମାନଙ୍କୁ ରାତିରେ ସହର ମଧ୍ୟକୁ ଯିବାର ବାରଣ କରିଥିଲି । ମାତ୍ର ମୋର ଖାନସମା ତାହା ଅମାନ୍ୟ କରିଥିବାରୁ ପରଦିନ ରାଜପଥରେ ହତ ହୋଇ ପଡ଼ିଥିବାର ଦେଖାଗଲା । ଜୁନ ୧୭ ତାରିଖରେ ଏ ବ୍ୟାପାର ଚରମ ସୀମାରେ ଉପନୀତ ହୋଇଥିଲା । ସେଦିନ ନିଜର ଲୋକବଳ ଘେନି ଆକବର ସ୍ୱଗୃହ ମଧ୍ୟରୁ ବହିର୍ଗତ ହୋଇ ନଗର ଅଭିମୁଖରେ ଯାତ୍ରା କରୁ କରୁ ପଥରେ ଯେଉଁମାନେ ବାଧା ଉପୁଜାଇଥିଲେ ସେମାନଙ୍କୁ ହତ୍ୟା କରୁଥିବାରୁ ସହରଟି ଏକ ବିପୁଳ ହତ୍ୟାକାଣ୍ଡର ଦୃଶ୍ୟ ଧାରଣ କରିଥିଲା । ସେଥିରେ କୃଷ୍ଣଗଡ଼ ମାଲିକର ୬୦୦ ଜଣ ଅନୁଚର ହତ ହୋଇଥିଲେ । ମୁଁ ମୋର ପ୍ରହରୀ ସଂଖ୍ୟା ଦ୍ୱିଗୁଣିତ କରି ଆପଣାର ଲୋକମାନଙ୍କୁ ସମ୍ମିଳିତ କଲି । ଏଠାରେ ରାଜକର୍ମରେ ଦୁଇଜଣ ଜର୍ମାନ ଓ ଦୁଇଜଣ ଫରାସୀ ନିଯୁକ୍ତ ଥିଲେ । ବନ୍ଧୁକ ପରିଷ୍କାର କରିବା

ସେମାନଙ୍କର କାମ ଥିଲା । ପ୍ରଥମ ଦୁଇଜଣ ନଅରରେ ହତ ହୋଇଥିଲେ ଓ ଅନ୍ୟ ଦୁଇଜଣ ମୋ ଆଶ୍ରୟକୁ ପଳାଇ ଆସି ଜୀବନ ରକ୍ଷା କରିଥିଲେ ।

ସକାଳେ ମୋର ସର୍ଦ୍ଦାର ଏଣେ ତେଣେ ବୁଲୁଥିବା ସମୟରେ ଧୃତ ହୋଇ ଆକବରପାଖକୁ ନୀତ ହେଲା । ସେ ବିନା କାରଣରେ ତାହାର ଜୀବନଦଣ୍ଡ ଆଦେଶ ଦେବାର ସମ୍ବାଦ ଶୁଣି ଜଣେ ଲୋକ ହାତରେ ତାହାକୁ କହି ପଠାଇଲି ଯେ, ମୁଁ ସେ ବିବାଦରେ କୌଣସି ପକ୍ଷରେ ନାହିଁ, ମୋର ଲୋକକୁ ଅବିଳମ୍ବେ ଛାଡ଼ି ନ ଦେଲେ ମୁଁ ସୈନ୍ୟ ଘେନି ରାଜାଙ୍କ ଭାଇମାନଙ୍କ ସହିତ ମିଳିତ ହେବି । ସେତେବେଳେ ରାଜାଙ୍କ ଭାଇମାନେ ଗୃହମଧ୍ୟରେ ଆବଦ୍ଧ ଥାଇ ଆତ୍ମରକ୍ଷା କରୁଥିଲେ । ଏହି ଧମକରେ ଉତ୍ତମ ଫଳ ଫଳିଥିଲା । ସର୍ଦ୍ଦାରଟି ଭୟରେ ଅଜ୍ଞାନ ହୋଇ ମୋ ନିକଟରେ ଉପସ୍ଥିତ ହୋଇଥିଲା ।

ଆକବର ଦେବାନକର୍ମରେ ନିଯୁକ୍ତ ହୋଇ କୃଷ୍ଣଗଡ଼ ମାଲିକଙ୍କୁ ଅନ୍ଧକାରଗୃହରେ ଆବଦ୍ଧ କରି ରଖିଲା । ଏହି ଘରକୁ ଆକବରର ଶୋଇବା ଘର ଭିତରୁ ଗୋଟିଏ ମାତ୍ର ଗୁପ୍ତଦ୍ୱାର ଥିଲା ।

ଏହିପରି ବିବାଦବିସମ୍ବାଦପୂର୍ଣ୍ଣ ରାଜ୍ୟରେ ମୋର କାର୍ଯ୍ୟ ହେବାର ଆଦୌ ଆଶା ନ ଥିଲା । ମାତ୍ର ବର୍ଷାଋତୁ ଆରମ୍ଭ ହୋଇଥିବାରୁ ସ୍ଥଳପଥରେ ଫେରିବାର ଉପାୟ ନ ଥିଲା, ଜଳପଥରେ ଫେରିବାପାଇଁ ନୌକା ମଧ୍ୟ ମିଳିଲା ନାହିଁ । ତେଣୁ ଯେତେ ଦୂର ସମ୍ଭବ ମନଶାନ୍ତିରେ ମୋତେ ବାଧ୍ୟ ହୋଇ ରହିବାକୁ ପଡ଼ିଲା ।

ରାଜଧାନୀର ନାମାନୁସାରେ ରାଜ୍ୟର ନାମ **ସମ୍ବଲପୁର,** ମାତ୍ର ଏଠାର ରାଜା **ଅଠର ଗଡ଼ର ରାଜା** ଉପାଧିରେ ଭୂଷିତ । ହିନ୍ଦୁମାନଙ୍କ ମଧ୍ୟରେ ଏପରି ଉପାଧି ବିରଳ ନୁହେ । ଏଣୁ ମୋର ସନ୍ଦେହ ହୁଏ ଯେ, ମରହଟ୍ଟା ରାଜଧାନୀ ସତରଗଡ଼ ସତର (ନକ୍ଷତ୍ର) ଗଡ଼ ନ ହୋଇ ସତର (୧୭) ଗଡ଼ ହେବ । କାରଣ ସତର ନାମକ କୌଣସି ନକ୍ଷତ୍ର

ଜ୍ୟୋତିଷଶାସ୍ତ୍ରରେ ନାହିଁ । **ଛତିଶଗଡ଼**ରେ ଦୁଇଜଣ ରଜା ଅଛନ୍ତି । ଜଣେ ଏଲ୍ଲାହାବାଦ ପ୍ରଦେଶରେ ଓ ଅନ୍ୟ ଜଣକ ଲକ୍ଷ୍ନୌର ଚଣ୍ଡରାଞ୍ଚଲରେ ଥାଆନ୍ତି ।

ସମ୍ବଲପୁରର ସ୍ଥାପୟିତା **ବଲରାମ ଡାକି** (Balram Dakee) । ତାଙ୍କ ସମ୍ବନ୍ଧରେ ନିମ୍ନଲିଖିତ ବିବରଣ କଥିତ ଅଛି । ଦୁଇ ଶତାବ୍ଦୀ ପୂର୍ବେ **ଆଜମିର** ଅନ୍ତର୍ଗତ **ସମର** (Sommer) ନଳବର୍ତ୍ତୀ ରାଜ୍ୟରୁ ଦଳେ ହିନ୍ଦୁ ଜଗନ୍ନାଥଦର୍ଶନକୁ ଆସିଥିଲେ । ଫେରିବା ବେଳେ ଦଳର ସମସ୍ତେ ନିହତ ହେଲେ । କେବଳ ଜଣେ ମାତ୍ର ରମଣୀ ରକ୍ଷା ପାଇ **ପାଟନା**କୁ ଆସିଲା । ପାଟନା ଏଠାରୁ ୩୦ କ୍ରୋଶ ଦୂରବର୍ତ୍ତୀ ଓ ଏ ଅଞ୍ଚଳର ତତ୍କାଳୀନ ରାଜଧାନୀ । ତାହାର ପୁତ୍ର ବଡ଼ ହେବାଯାଏ ସେ ଭିକ୍ଷାଦ୍ୱାରା ଜୀବିକା ନିର୍ବାହ କଲା । ତରୁଣ ବୟସରେ ଶିକାରରେ ପ୍ରବୀଣତା ଓ ବ୍ୟାୟାମରେ କୌଶଳ ଦେଖି ରଜା ତାହାକୁ ପୋଷ୍ୟପୁତ୍ରରୂପେ ଗ୍ରହଣ କଲେ । ରାଜ୍ୟଲାଭ କରି ସେ ସେଠାରେ ଦୁର୍ଗ ନିର୍ମାଣ କଲେ ଓ ପିତୃଦେଶର ନାମାନୁସାରେ ଦୁର୍ଗର ନାମ ସମ୍ବଲପୁର ରଖିଲେ । ଯଦି ତାଙ୍କର ବଂଶ ସମରରୁ (Sommer) ଆସିଥାନ୍ତେ, ତେବେ ସେ ସମରପୁର (Sommerpoor) ନାମ ରଖିଥାନ୍ତେ, ମାତ୍ର ମୋର ମନେ ହୁଏ, ସେମାନେ ରୋହିଲଖଣ୍ଡର ପ୍ରଧାନ ନଗର ସମ୍ବଲ (Sumbel)ଠାରୁ ଏଠାକୁ ଆସିଥିଲେ ।

ଉତ୍ତର ଅକ୍ଷାଂଶ ୨୦° ଠାରୁ ୨୨° ୨୫' ଓ ଦ୍ରାଘିମାଂଶ ୮୩° ଠାରୁ ୮୪° ୫୦' ବିସ୍ତୃତ ସ୍ଥାନ ମଧ୍ୟରେ ଏହି ରାଜ୍ୟ ଅବସ୍ଥିତ । ଏହାର ପଶ୍ଚିମରେ **ବୁଡ଼ାସମ୍ବର** (Boora samber) ଓ **ରତନପୁର**, ପୂର୍ବରେ **ବାମଣ୍ଡା** (Bimbera), **ରେଢ଼ାଖୋଲ** (Lundacole) ଓ **ବୌଦ** (Boad), ଦକ୍ଷିଣରେ **ପାଟନା** (Patna) ଓ **କଳାହାଣ୍ଡି** (Coondon), ଉତ୍ତରରେ **ଗାଙ୍ଗପୁର** ଓ **ସରଗୁଜା** । ରଘୁଜିଙ୍କ

ଜ୍ୟେଷ୍ଠପୁତ୍ର **ବିମ୍ବାଜି** ଜାନୁଜଙ୍କୁ ପିତୃରାଜ୍ୟର ସମସ୍ତ ଅଂଶ ଛାଡ଼ିଦେଇ କେବଳ ରତନପୁର ଆପଣା ହାତରେ ରଖିଥିଲେ । ୧୭୬୦ ଖ୍ରୀଷ୍ଟାବ୍ଦରେ ମି: ଲ (Mr. Law) ୧୨୦ ଜଣ ଫରାସୀ ସହିତ ବିହାରରୁ (Bahar) ଏହି ପଥରେ ଦାକ୍ଷିଣାତ୍ୟକୁ ପଳାଇଯିବାର ଚେଷ୍ଟା କରି ଏହିଠାରେ ରହିଥିଲେ । ବିମ୍ବାଜି କିଛିଦିନଯାଏ ସେମାନଙ୍କୁ ପାଖରେ ରଖିଥିଲେ, ମାତ୍ର ଅବଶେଷରେ ବିଶ୍ୱାସଘାତକତା ପୂର୍ବକ ସମସ୍ତଙ୍କୁ ହତ୍ୟା କରିଥିଲେ । ପୁରାତନ ହିନ୍ଦୁଭିଷାରେ ପାଠଣା (ପତ୍ତନ) ଶବ୍ଦର ଅର୍ଥ ପାନ୍ଥଶାଳା; ମାତ୍ର ଏଠାରେ ମୂଳ ଅର୍ଥର ଏପରି ପରିବର୍ତ୍ତନ ଘଟିଅଛି ଯେ, ଲୋକେ କୌଣସି ପଥିକଙ୍କୁ ଏହି ରାଜ୍ୟ ମଧ୍ୟରେ ପ୍ରବେଶ କରିବାକୁ ଦଅନ୍ତି ନାହିଁ । ମରହଟ୍ଟାମାନେ ସେ ଚେଷ୍ଟାରେ ଅକୃତକାର୍ଯ୍ୟ ହୋଇଥିଲେ । ପୂର୍ବୋକ୍ତ ଆଉ ସମସ୍ତ ରାଜ୍ୟ ଅତି କ୍ଷୁଦ୍ର ଓ ନଗଣ୍ୟ ।

ଶୀତୋଷ୍ଣତାର ପରିବର୍ତ୍ତନ ହେତୁ ସମ୍ବଲପୁରର ଜଳବାୟୁ ଅତି ଅସ୍ୱାସ୍ଥ୍ୟକର । ଏଠାରେ ଖୋଲ ଗୁଡ଼ିକରେ ଲୋକବସତି ଅଛି । ସେଥିରେ ବାୟୁସ୍ରୋତ ଚାଳିତ ହୋଇ ପାରୁ ନ ଥିବାରୁ ଗ୍ରୀଷ୍ମ ସମୟରେ ଅତିଶୟ ଉତ୍ତାପ ବର୍ଦ୍ଧିତ ହୁଏ । ମାତ୍ର ଅସରାଏ ବୃଷ୍ଟି ହେବା ମାତ୍ରକେ ସେଥିରୁ ଏପରି ତୀବ୍ର ଶୀତଳ ବାୟୁ ପ୍ରବାହିତ ହୁଏ ଯେ, ଚବିଶ ଘଣ୍ଟା ମଧ୍ୟରେ ଗ୍ରୀଷ୍ମ ଋତୁ ଶୀତରେ ରୂପାନ୍ତରିତ ହୁଏ । ଏହି ହେତୁରୁ ଏ ଦେଶରେ ଲୋକେ ଏତେ ବାତରୋଗାକ୍ରାନ୍ତ ଓ ମୋର ଲୋକମାନେ ଅସହ୍ୟ ଜ୍ୱରାକ୍ରାନ୍ତ ହୋଇଥିଲେ ।

ଖୋଲଗୁଡ଼ିକ ପଟୁ ମାଟିରେ ପୂର୍ଣ୍ଣ ଥିବାଯୋଗୁଁ ସେଥିରେ ଶସ୍ୟ ଭଲ ଜନ୍ମେ । ଏ ମୃତ୍ତିକାରେ ଧାନ ଅପେକ୍ଷା ଅନ୍ୟ ଫସଲ ଭଲ ହୁଅନ୍ତା, କାରଣ ପଟୁମାଟିରେ ରବି ଫସଲ ଭଲ ହୁଏ । ପଟୁମାଟିର ଗୁଣ ଏହି ଯେ, ସେଥିରେ ପାଣି ଶୀଘ୍ର ଟାଣି ହୋଇଯାଏ ନାହିଁ, ମାତ୍ର ଲଘୁ ମାଟି ପାଣିକୁ ଟାଣି ନେଉଥିବାରୁ ଶସ୍ୟର ଶିଁଷା ବାହାରି ନ ସରୁଣୁ ଗଛ ପାଚିଲା ପଡ଼ିଯାଏ । ସେଥିଯୋଗୁଁ ଦାନାଦାର ଫସଲ ହୁଏ ନାହିଁ ।

ଏହା ସତ୍ତ୍ୱେ ଏଠାର ପ୍ରଧାନ ଫସଲ ଧାନ, କାରଣ ଜାନୁଆରୀ ପୂର୍ବରୁ ଏହାର କଟା ମଳା କାମ ଶେଷ ହୁଏ । ମରହଟ୍ଟାମାନେ ଦେଶଲୁଣ୍ଠନପାଇଁ ବାହାରିବା ବେଳକୁ କୃଷିକାମର କିଛି ବାକି ନ ଥାଏ ।

ପର୍ବତଗୁଡ଼ିକରେ ହୀରା ଓ ସୁନା ମିଳେ । ଆଳସ୍ୟ ଓ ମରହଟ୍ଟାଭୟ ହେତୁରୁ ସ୍ଥାନୀୟ ଲୋକମାନେ ଖଣିରେ କାର୍ଯ୍ୟ କରନ୍ତି ନାହିଁ । ଧନ-ପ୍ରାପ୍ତିର ଆଶା ଥିଲେ ମରହଟ୍ଟାମାନେ ଯଡ଼ପରୋନାସ୍ତି ଅତ୍ୟାଚାର କରନ୍ତି । ତେଣୁ ସେମାନେ ସର୍ବଦା ପ୍ରବାହିତ କ୍ଷୁଦ୍ର ନଦୀଗୁଡ଼ିକର ବାଲି ଧୋଇବାରେ ସନ୍ତୁଷ୍ଟ ରହି ତଦୁପାୟରେ ଯେଉଁ ପରିମାଣ ସ୍ୱର୍ଣ୍ଣ ସଞ୍ଚୟ କରନ୍ତି, ତାହା ଏକାବେଳକେ ହେୟ ନୁହେ । ପର୍ବତଗୁଡ଼ିକ ପ୍ରସ୍ତରପୂର୍ଣ୍ଣ । ତାହାର ଉପର ସ୍ତରରେ ଏହି ଧାତୁ ସବୁ ମିଳେ ।

ଦ୍ରବ୍ୟ ବିନିମୟରେ ରାଜସ୍ୱ ପ୍ରଦତ୍ତ ହୁଏ ଓ ରାଜସ୍ୱ ଆଦାୟର ନିୟମ ମଧ୍ୟ ଅତି ସରଳ । ଧାନ ବା ଚାଉଳର ନିର୍ଦ୍ଦିଷ୍ଟ ପରିମାଣରେ ପ୍ରତ୍ୟେକ ଗ୍ରାମର ଜମାବନ୍ଦୀ ହୁଏ ଓ ଏହି ରୀତିରେ ଗ୍ରାମବାସୀମାନଙ୍କ ଭିତରେ ଜମି ଭାଗ କରି ହୋଇଥାଏ । ବୟଃପ୍ରାପ୍ତ ହେବା ମାତ୍ରକେ ପ୍ରତ୍ୟେକ ଲୋକ ସୈନିକ ଶ୍ରେଣୀଭୁକ୍ତ ହୁଏ ଏବଂ ଦୈନିକ ପ୍ରାୟ ଅଧ ପୋଇଲା (ପ୍ରାୟ ୩ ସେର) ଚାଉଳ ଖୋରାକ ଓ ପୋଷାକ ନିମିତ୍ତ ବାର୍ଷିକ ୪୮ ପାଏ । ୧୪୬½ ପୋଇଲା ଧାନ ଫଳିବା ଭଳି ଅବାଦୀ ଜମି ତାହାକୁ ଦିଆଯାଏ । ସେ ୭୦½ ପୋଇଲା ଧାନ ରାଜା ବା ରାଜକର୍ମଚାରୀଙ୍କୁ ଦିଏ ଓ ଅବଶିଷ୍ଟ ନିଜର ଭରଣପୋଷଣ ନିମିତ୍ତ ବ୍ୟୟ କରେ । ଜମି ତାହାର ସ୍ଥିର ହାତରେ ରହେ, ସେ ତାହାର ସ୍ୱାମୀକୁ ପ୍ରତିପୋଷଣ କରେ, ଜଣା ମାଗଣ ଦିଏ । ଜମାବନ୍ଦୀର ହାର ଅପେକ୍ଷା ଅଧିକ ଫଳିଲେ ତାହାର ଲାଭ, ଊଣା ଫଳିଲେ ତାହାର କ୍ଷତି । ୩।୪ଟି ଗ୍ରାମର ଖଜଣାରେ—ଅର୍ଥାତ୍ ଜମି ଆୟର ½ ମାତ୍ର—ରାଜାଙ୍କର ବ୍ୟୟ ନିର୍ବାହିତ ହୁଏ । ଅବଶିଷ୍ଟ ଖଜଣା ତାଙ୍କର କୁଟୁମ୍ବ ବା ପ୍ରଧାନ କର୍ମଚାରୀମାନେ

ପାଆନ୍ତି । ଏହିପରି ଅଧିବାସୀମାନଙ୍କୁ ଏମାନଙ୍କର ଅଧୀନସ୍ଥ ହେବାକୁ ପଡ଼େ ।

ଅନ୍ୟାନ୍ୟ ରାଜସ୍ୱ ମଧ୍ୟରେ ବ୍ୟବସାୟିଶୁଳ୍କ, ପଥକର ଓ ଅର୍ଥଦଣ୍ଡ ପ୍ରଧାନ । ପୂର୍ବୋକ୍ତ କରହାରର ନିର୍ଦ୍ଦିଷ୍ଟତା ନାହିଁ । ରାଜା ବିଚାର କରି ତାହା ସ୍ଥିର କରନ୍ତି । ରାଜପକ୍ଷ ଲୋକମାନେ ନାଗପୁରାଗତ ବହୁ ବ୍ୟବସାୟୀମାନଙ୍କୁ ହତ୍ୟା କରି ତାଙ୍କର ଧନ ସମ୍ପତ୍ତି ଲୁଣ୍ଠନ କରିଥିବାରୁ ଗତ ତିନିବର୍ଷ ମଧ୍ୟରେ ଅପର କେହି ବ୍ୟବସାୟୀ ଏ ପଥରେ ଯାତାୟାତ କରୁ ନ ଥିଲେ । ଶେଷୋକ୍ତ କର ମଧ୍ୟ ସ୍ୱେଚ୍ଛାଚାରିତା ଉପରେ ସଂଗୃହୀତ ହୁଏ । ଦୋଷ ନ ଥିଲେ ମଧ୍ୟ ଲୋକମାନଙ୍କୁ ଅର୍ଥଦଣ୍ଡରେ ଦଣ୍ଡିତ ହେବାକୁ ପଡ଼ୁଥିଲା । ଏ ଦେଶରେ ସମାଜର ଅନିଷ୍ଟ ନ କରି ଅର୍ଥ ସଂଗୃହୀତ ହୋଇ ପାରେ ନାହିଁ ।

ସମ୍ବଲପୁରର ଶାସନତନ୍ତ୍ର ମୁଖ୍ୟତଃ ସାମନ୍ତମୂଳକ (feudal) । ସାମନ୍ତମାନେ ପ୍ରଥମତଃ ରାଜକର୍ମଚାରୀ ଥିଲେ । ରାଜାଙ୍କର ଦୁର୍ବଳତା ହେତୁ ଏବେ ସେଗୁଡ଼ିକ ବଂଶାନୁକ୍ରମିକ ହୋଇଅଛି । ସାମନ୍ତମୂଳକ ରାଜତନ୍ତ୍ରରେ କୌଳୀନ୍ୟତନ୍ତ୍ର ଛଡ଼ା ଅନ୍ୟ ତନ୍ତ୍ର ପରିପୁଷ୍ଟ ହୋଇ ପାରେ ନାହିଁ । କାରଣ ସାମନ୍ତାଧିକାରୀ ଲୋକ ପକ୍ଷରେ ତାହାର କାର୍ଯ୍ୟକୁ ବଂଶାନୁକ୍ରମିକ କରିବା ନିମିତ୍ତ ଅପହରଣକାରୀ ରାଜାଙ୍କଠାରେ ଈର୍ଷ୍ୟା ପୋଷଣ କରିବା ସ୍ୱାଭାବିକ ହୋଇଥାଏ ।

ସାମନ୍ତମୂଳକ ରାଜତନ୍ତ୍ରର (Fedul, Government) ମୂଳମନ୍ତ୍ର ଆତ୍ମରକ୍ଷା; ସତର୍କତାପୂର୍ଣ୍ଣ ସନ୍ଦେହ ତାହାର ଚିରସହଚର । ସାମନ୍ତବୃନ୍ଦଙ୍କ ମଧ୍ୟରେ କଳହସୃଷ୍ଟି ରାଜଧର୍ମରୂପେ ବିବେଚିତ ହୁଏ । ସାମନ୍ତମାନଙ୍କଠାରେ ଅନେକ ସୈନ୍ୟ ଥିବାରୁ ସେମାନେ ଆପଣାକୁ ରାଜା ବୋଲି ମନେ କରନ୍ତି । ଏହାଦ୍ୱାରା ପ୍ରଭୁ ସହିତ ସେମାନଙ୍କର କଳହର ସୂତ୍ରପାତ ହୁଏ ଏବଂ ରାଜା ଯଦି କୌଶଳକ୍ରମେ ସେମାନଙ୍କ ମଧ୍ୟରେ ବିରୋଧ କରାଇ ପାରନ୍ତି, ତେବେ ବିରୋଧକାରୀମାନଙ୍କ ମଧ୍ୟରେ ଯେ ଶ୍ରେଷ୍ଠ,

ତାହାର ପକ୍ଷ ସମର୍ଥନ କରନ୍ତ ଓ ଅପର ବ୍ୟକ୍ତିର ସାମନ୍ତାଧିକାର ବାଜେୟାପ୍ତ କରନ୍ତ । ଏହାଦ୍ୱାରା ଦୀର୍ଘକାଳ ରାଜତ୍ୱକାରୀ ରାଜା ପ୍ରବଳ ପରାକ୍ରାନ୍ତ ହେଉଥିଲେ । ପକ୍ଷାନ୍ତରେ ରାଜା ନାବାଳକ ଥିବା ସମୟରେ ରାଜ୍ୟାନ୍ତର୍ଗତ ଜମିଦାରମାନଙ୍କର ପ୍ରୀତିପାତ୍ର ଅଥବା ହୀନପକ୍ଷରେ ରାଜାଙ୍କର ପିତୃବ୍ୟ ବା ଭ୍ରାତା ଉପରେ ରାଜ୍ୟଚାଳନାର ଭାର ଅର୍ପିତ ହୋଇଥାଏ । ତଦ୍ଦ୍ୱାରା ରାଜ୍ୟ ସ୍ୱେଚ୍ଛାଚାରୀ ଲୋକ ହାତରେ ପଡ଼ି ଛାରଖାର ହୁଏ । ଇଂଲଣ୍ଡର ଲାନ୍‌କେଷ୍ଟାର ପରିବାର ଏହିପରି ଭାବରେ ସୃଷ୍ଟ ହୋଇ ଦୁଇ ଶତାବ୍ଦୀକାଳ ଇଂଲଣ୍ଡକୁ ଘୋର ଅଶାନ୍ତିରେ ପକାଇଥିଲା । ଯେଉଁ ଲୋକମାନଙ୍କର ରାଜା ଶାନ୍ତିରକ୍ଷାର ବିଧାନ ନ କରି ଶାନ୍ତିଭଙ୍ଗରେ ଇଚ୍ଛୁକ ହୁଅନ୍ତି, ସେ ଲୋକମାନଙ୍କର ଅବସ୍ଥା କେଡ଼େ ଶୋଚନୀୟ ନୁହେ ! ମୋର ପ୍ରଦତ୍ତ ଇତିହାସରୁ ଏହା ସ୍ପଷ୍ଟ ପ୍ରତିପନ୍ନ ହେଉଅଛି ଯେ, ସାମନ୍ତତନ୍ତ୍ରନିହିତ ଯାବତୀୟ ଅନିଷ୍ଟ ଏହି ରାଜ୍ୟରେ କେନ୍ଦ୍ରୀଭୂତ ହୋଇଥିଲା । ଯେହେତୁ ଜଣେ ଲୋକକୁ ପଦଚ୍ୟୁତ କରିବାରେ ଏତେ ବିପଦ ଥିଲା ଯେ, ତାହା କଦାଚିତ ହତ୍ୟା ବ୍ୟତୀତ ସାଧିତ ହେଉ ନ ଥିଲା । କାରଣ ସେ ସବୁ ତାହାର ସାହାଯ୍ୟକାରୀ ସାମନ୍ତ ରାଜା ବା ଜମିଦାରର ଦ୍ୱାରସ୍ଥ ହୋଇ ପାରୁଥିଲା, ତେବେ ସେ ରାଜାଙ୍କ ବିପକ୍ଷରେ ଘୋର ବାଧା ଉପୁଜାଇ ପାରୁଥିଲା । ପୂର୍ବତନ ଦେବାନମାନଙ୍କ ଅଧିକୃତ ଗ୍ରାମଗୁଡ଼ିକ ରାଜଧାନୀରୁ ଦୂରବର୍ତ୍ତୀ ସ୍ଥାନରେ ଥିବା ହେତୁରୁ ସେମାନେ ହଠାତ୍ ଆକ୍ରାନ୍ତ ହୋଇ ପାରୁଥିଲେ; ମାତ୍ର ବର୍ତ୍ତମାନ ଦେବାନ ଆକବରର କ୍ଷମତା ମୂଳ ରାଜଧାନୀରେ ପ୍ରବଳ ଥିବାରୁ ସେ ରାଜଧାନୀର ଅଧ୍ୟକ୍ଷ ହୋଇଥିଲା ଓ ଅବଶେଷରେ ରାଜାଙ୍କୁ ମଧ୍ୟ ବନ୍ଦୀ କରିଥିଲା ।

ଅଧଃପତିତ ଦେଶର ଅଧିବାସୀମାନଙ୍କର ଆଚାର ବ୍ୟବହାରର ଆଲୋଚନା ଅପେକ୍ଷା ଉନ୍ନତ ଦେଶର ଆଲୋଚନା କେଡ଼େ ପ୍ରୀତିପ୍ରଦ ଓ ଏହି ଅଧଃପତିତ ଅଧିବାସୀମାନଙ୍କ ବିଷୟ ଆଲୋଚନା କେଡ଼େ

ଅପ୍ରୀତିକର ! ହିନ୍ଦୁରାଜତ୍ୱରେ ପାର୍ବତୀୟ ଲୋକମାନେ ଅଧିକ ଯୁଦ୍ଧପ୍ରିୟ ଥିବାରୁ ସମତଳବାସୀ ଲୋକମାନଙ୍କଠାରୁ ଅଧିକ ଶ୍ରେଷ୍ଠତା ଦାବି କରୁଥିଲେ । ସେମାନେ ଦେଶାନ୍ତର ଗମନ ସୁଖକର ମଣୁଥିବାରୁ ଏ ଦେଶ ଜନାକୀର୍ଣ୍ଣ ନ ଥିଲା । ତୈମୁରକୁଳ ବଜେତାମାନେ ଏମାନଙ୍କଠାରୁ ସ୍ୱଳ୍ପ କର, ଭ୍ରମଣକାରୀଠାରୁ ଦସ୍ତୁକ ପରୀକ୍ଷା ଓ ଶାସନର ଆଦେଶ ପ୍ରତିପାଳନ କେବଳ ଦାବି କରୁଥିଲେ । ତେଣୁ ସେମାନେ ସ୍ୱଦେଶଜାତ ଦ୍ରବ୍ୟାଦି ଉପରେ ସନ୍ତୁଷ୍ଟ ଥିଲେ । ଦେଶ ଉର୍ବର ଥିବାରୁ ସ୍ୱଳ୍ପ ପରିଶ୍ରମରେ ଆପଣାକୁ ପ୍ରତିପୋଷଣ କରି ପାରୁଥିଲେ ବୋଲି ଏମାନେ ବିଶେଷ ଶ୍ରମକାତର ଥିଲେ । ମରହଟ୍ଟାର ଅଧୀନ ହେଲା ଉତ୍ତାରୁ ବିଶୃଙ୍ଖଳ ରାଜ୍ୟଶାସନର ଅତ୍ୟାଚାରରେ ଏମାନଙ୍କର ସମସ୍ତ ଉଦ୍ୟମ ରହିତ ହେଲା ଏବଂ ଉଦ୍ୟମହୀନତାହିଁ ସମ୍ପୂର୍ଣ୍ଣ ଆଳସ୍ୟରେ ପରିଣତ ହେଲା । ପରିଶେଷରେ ଯେଉଁ ଜାତି କେବଳ ସୌଖୀନ କାର୍ଯ୍ୟ ସାଧନ ନିମିତ୍ତ ଅଭିପ୍ରେତ, ସେମାନଙ୍କୁ ଭୂମିକର୍ଷଣ ଓ ଶ୍ରମସାଧ୍ୟ କାର୍ଯ୍ୟର ଭାର ବହନ କରିବାକୁ ପଡ଼ିଲା । ଯେଉଁ ମାଧୁର୍ଯ୍ୟ ନିମିତ୍ତ ଇଂଲଣ୍ଡର ରମଣୀମାନେ ସୁନାମ ଅର୍ଜନ କରିଅଛନ୍ତି, ଏମାନେ ତାହାକୁ ଏକାବେଳେକେ ହରାଇଅଛନ୍ତି । ଅତି ପୁରୁଷମାନେ ପଶୁଠାରୁ ହୀନ ହୋଇ ନାନାବିଧ ମର୍ମବିଦାରକ ଦୁର୍ଗୀତି ଆଚରଣ କରୁଅଛନ୍ତି । ଏଥିରେ ମଧ୍ୟ ଚୁଡ଼ିପରିବର୍ତ୍ତନ ଘଟିଅଛି । ଦରିଦ୍ରତାର ସୀମା ଅନୁସାରେ ସାଧାରଣ ନାଚୁଆ ପିଲାମାନଙ୍କୁ ପ୍ରଶ୍ରୟ ଦିଆ ଯାଉଥାଏ । ସେମାନେ ଲଣ୍ଡନର ଶିକ୍ଷିତ ସମାଜର ବିଳାସୀ ବ୍ୟକ୍ତିମାନଙ୍କ ସଦୃଶ ଔଦ୍ଧତ୍ୟ ଦେଖାଇଥାଆନ୍ତି । ସ୍ୱୀକାରର ବ୍ରହ୍ମାସ୍ତ୍ର କଳହରେ ମଧ୍ୟ ସେମାନେ ବିବାହିତା ରମଣୀମାନଙ୍କୁ ଅତିକ୍ରମ କରନ୍ତି । କେବେ କେବେ ମାଡ଼ଗୋଳ ମଧ୍ୟ ହୋଇଥାଏ । ଏଥିରେ ସେମାନଙ୍କର ବିଶେଷ ଅନିଷ୍ଟ ହୁଏ । କାରଣ ସ୍ୱାମୀମାନେ ସର୍ବଦା ପ୍ରିୟବ୍ୟକ୍ତିର ପକ୍ଷ ସମର୍ଥନ କରନ୍ତି । ଏହାଦ୍ୱାରା ନାରୀମାନଙ୍କର କର୍ମକୁଶଳତା ବର୍ଦ୍ଧିତ ହୁଏ । କାରଣ ପରିଶ୍ରମଦ୍ୱାରା ସେମାନେ ଅର୍ଥୋପାର୍ଜନ କରି ସ୍ୱାମୀ ବା ଅନ୍ୟ ଲୋକର ଅନୁଗ୍ରହ କ୍ରୟ କରିବାକୁ ସମର୍ଥ ହୁଅନ୍ତି ।

ଦେବାନର ସର୍ବନାଶ କରିବା ନିମିତ୍ତ ମୁଁ ଏକାଧିକବାର ଅନୁରୁଦ୍ଧ ହୋଇଥିଲି । ଯଦି ସ୍ତ୍ରୀଲୋକମାନେ ଜଣେ ସ୍ତ୍ରୀଦେବାନ ନିଯୁକ୍ତ କରିବା ପାଇଁ ମୋର ସାହାଯ୍ୟପ୍ରାର୍ଥନା କରିଥାନ୍ତେ, ତେବେ ମୁଁ ସେ ପ୍ରାର୍ଥନା ରକ୍ଷା କରିଥାନ୍ତି । କାରଣ ସେମାନେହିଁ ଏଠାରେ ଯୋଗ୍ୟତର ଥିଲେ । ପୁରୁଷମାନେ ନାରୀମାନଙ୍କ ଅପେକ୍ଷା ଏତେ ଅଶିକ୍ଷାଗ୍ରସ୍ତ ଯେ, ଯେଉଁ ଲୋକ ମୋ ସହିତ ପ୍ରାତଃକାଳରେ ପରିଚିତ ହୋଇ ମୋଠାରୁ ଯଥୋଚିତ ସମ୍ମାନ ପାଇଥିଲା, ତାହାର ସ୍ତ୍ରୀ ଉପର ଓ ନିଜର ଚରି ବୋଝେ କାଠ ଅତିକଷ୍ଟରେ ଆଣି ମୋଠାରେ ଏକ ପେନ ମୂଲ୍ୟରେ ବିକ୍ରୟ କରିଥିଲା !

ଏଠାରେ ଲୋକମାନେ ସାଧାରଣତଃ ମିତାହାରୀ । ୨୪ ଘଣ୍ଟାରେ ବେଳେ ମାତ୍ର ଆହାର କରନ୍ତି ଏବଂ ତାହା ମଧ୍ୟ ସନ୍ଧ୍ୟାବେଳେ କରନ୍ତି । ସେତେବେଳେ ସେମାନେ ପେଟରେ ଗୃହଲର ଭାତ ଖାଆନ୍ତି । ଆଉ ଯେଉଁ ପାଣିରେ ଭାତ ରନ୍ଧା ହୋଇଥାଏ, ତାହା କାଲି ପିଇବା ପାଇଁ ରଖାଯାଏ । କଞ୍ଚା ପାଣି ପିଇଲେ ଏ ଲୋକମାନଙ୍କର ଶୋଷ ବଢ଼େ । ମନୁଷ୍ୟମାନେ ଖର୍ବକାୟ, ମାତ୍ର ସୁଶ୍ରୀ, ଆଳସ୍ୟପରିପୂର୍ଣ, ବିଶ୍ୱାସଘାତକ ଓ କ୍ରୁର । ଦସ୍ୟୁମୟ ଭଗବାନ ବ୍ୟାଘ୍ରର ସମସ୍ତ ମନ୍ଦ ଗୁଣ ସହିତ ସେହି ଜନ୍ତୁର ଭୀରୁତା ଏମାନଙ୍କଠାରେ ଆରୋପ କରିଅଛନ୍ତି । ତାହା ହୋଇ ନ ଥିଲେ ସେମାନଙ୍କର ଅନିଷ୍ଟସାଧନ ପ୍ରବୃତ୍ତିର ସମାନରୂପ ବିପଦାଶଙ୍କା ଅନୁଭବ କରିବାର ଶକ୍ତି ନ ଥିଲେ ମନୁଷ୍ୟସମାଜ ନିଶ୍ଚୟ ସେମାନଙ୍କୁ ଶିକାର କରି ପକାନ୍ତା । ସେମାନେ ହିନ୍ଦୁ ବୋଲି ପରିଚୟ ଦିଅନ୍ତି, ମାତ୍ର ସେହି ଧର୍ମର ବାହ୍ୟକ୍ରିୟାରେ ସେମାନଙ୍କ ଧର୍ମମତ ପର୍ଯ୍ୟବସିତ ।

ଜଗତର ସମସ୍ତ ଜାତିମାନଙ୍କ ପରି ଏମାନଙ୍କର ସଙ୍ଗୀତବିଦ୍ୟାର ଚର୍ଚ୍ଚା ଅଛି । ବାଦ୍ୟଯନ୍ତ୍ର ମଧ୍ୟରେ ଢୋଲ ଓ ମହୁରି ପ୍ରଧାନ । ମୃଦଙ୍ଗ-ଗୁଡ଼ିକର ଏକ ପାର୍ଶ୍ୱ ଅନ୍ୟ ପାର୍ଶ୍ୱ ଅପେକ୍ଷା ଟିକିଏ ବଡ଼ । ଏହା ବେକରେ ପଡ଼ିଥିବାରୁ ସେମାନଙ୍କର କଟୀତଟରେ ଝୁଲୁଥାଏ । ସାନ ପାଖରେ

ଧୀରେ ଧୀରେ ଡାହାଣ ହାତବାମ ଦୁଇଥର ଗୁମୁଡ଼ା ମାରନ୍ତି ଓ ବନ୍ଧ ପାଖରେ ବାଁ ହାତରେ ଥରେ ଜୋରରେ ଗୁମୁଡ଼ା ମାରନ୍ତି । ଏହି ବାଦ୍ୟ ସହିତ ନୃତ୍ୟର ତାଳରେ ପାଦର ବୁଢ଼ା ଆଙ୍ଗୁଳି ଦୁଇଥର ଚାଳିତ ହୁଏ ଓ ଗୋଇଠି ଥରେ ମାତ୍ର ଉତ୍ତୋଳିତ ହୁଏ । ତେଣୁ ପାଦରେ ବନ୍ଧା ହୋଇଥିବା ଘୁଙ୍ଗୁରଗୁଡ଼ିକ ପଖାଉଜର ବାଦ୍ୟ ସଙ୍ଗେ ସଙ୍ଗେ ରୁଣୁଝୁଣୁ ବାଜି ଉଠେ । ଏଠାରେ ଅର୍ଦ୍ଧଚନ୍ଦ୍ରାକାର ବେତନିର୍ମିତ ଅନ୍ୟ ଏକପ୍ରକାର ବାଦ୍ୟଯନ୍ତ୍ର ଦେଖିଲି । ତାହାର ଦୁଇ ମୁଣ୍ଡ ଖଣ୍ଡିଏ କ୍ଷୁଦ୍ର ପଟାର କଣା ଭିତରେ ଯାଇ ଆସି ପାରେ । ବେତର ପ୍ରତ୍ୟେକ ମୁଣ୍ଡରେ ଖଣ୍ଡିଏ ଲେଖାଏଁ ଚେପ୍ଟା କାଠ ଲଗା ହୋଇଥାଏ । ପଟାର ଏକମୁଣ୍ଡ ଧରି ଅନ୍ୟ ମୁଣ୍ଡରେ ବେତକୁ ଆଗପଛ ଟାଣିବାରେ ଚେପ୍ଟା କାଠଖଣ୍ଡମାନ କାଠରେ ବାଜି **Cherryclack** ଭଳିଆ ଶବ୍ଦ କରେ । କଇଁଚ ଧରି ବାଡ଼ି କାଟିଲେ ଯେପରି ଶବ୍ଦ ହୁଏ, ଏହାର ଶବ୍ଦ ଠିକ ତଦ୍ରୂପ । ରାଜାଙ୍କର ବାଦ୍ୟକର ଦଳକୁ ସଂକ୍ଷେପରେ କହିଲେ ଏହା ବୁଝାଯାଇ ପାରେ ଯେ, ସେମାନଙ୍କୁ ଦେଖିଲେ ଦଳେ ବାଳକ ହାଟରୁ ଆସୁଥିବା କଥା ମନେ ପଡ଼େ । କେବଳ ନାଚୁଆ ପିଲାଏ (pathics) ଏଠାରେ ନାଚନ୍ତି । ମାତ୍ର ସେମାନଙ୍କୁ ମୋର ବସା ଭିତରକୁ ପ୍ରବେଶ କରିବାକୁ ନ ଦେବାର ଅଭିପ୍ରାୟ ଜାଣି ଦେବାନ ୨୦ ମାଇଲ ଦୂରରୁ ଦୁଇଜଣ ବାଈ ମୋର ଚିତ୍ତବିନୋଦନ ନିମିତ୍ତ ଅଣାଇଥିଲେ । ସେମାନେ ନାଚୁ ନାଚୁ ଗୀତ ଗାଆନ୍ତି । ମାତ୍ର ବାଦ୍ୟ ସହିତ ସେମାନଙ୍କ ଗୀତର ଆଦୌ ସାମଞ୍ଜସ୍ୟ ନ ଥାଏ । ସେମାନେ ଯାହା ସମ୍ମୁଖରେ ନାଚନ୍ତି, ତାହାକୁ ଲକ୍ଷ୍ୟ କରି ଗୀତ ଗାଆନ୍ତି । ସେମାନଙ୍କ କବିତାଗୁଡ଼ିକ ବିଷ୍ଣୁଙ୍କର ବିଭିନ୍ନ ଅବତାରଲୀଳାର ଉଦ୍ଦେଶ୍ୟରେ ସଙ୍ଗୀତାକାରରେ ରଚିତ । ଲୋକମାନେ ଚିତ୍ରବିଦ୍ୟାର ଚର୍ଚ୍ଚା କରନ୍ତି ନାହିଁ । ସେମାନଙ୍କର ମନ୍ଦିରଗୁଡ଼ିକରେ ଅନେକ ମୂର୍ତ୍ତି ଅଛି, ମାତ୍ର ସେଗୁଡ଼ିକ ବିକଟାକାର ଥିବାରୁ ତାହାର ସୁସମ୍ପାଦନ ସମ୍ବନ୍ଧରେ ବିଚାର କରିବାର କୌଣସି ନିୟମ ନାହିଁ । ସେ ଶିଳ୍ପ ମଧ୍ୟ ଆଜିକାଲି ସେମାନଙ୍କ ମଧ୍ୟରୁ ଲୋପ ପାଇଲାଣି । ସେମାନଙ୍କର

ପୋଥି ସବୁ ଅଛି । ସେଥିରେ ୨୩୦୦ ବର୍ଷ ପର୍ଯ୍ୟନ୍ତ କାଳ ମଧ୍ୟରେ ଯେତେ ଗ୍ରହଣ ହେବ, ତାହାର ଗଣନା ଅଛି । ସେମାନେ କହନ୍ତି ଯେ, ସେହି ସମୟରେ ବିଷ୍ଣୁଙ୍କର ଅବତାର ହେବ ଏବଂ ସେ ପୃଥିବୀର ସମସ୍ତ ଅଧିବାସୀମାନଙ୍କୁ ଏକ ଧର୍ମାବଲମ୍ବୀ କରିବେ ।

ଏକପ୍ରକାର ପ୍ରବଳ ଜ୍ୱର ଏ ଦେଶର ସାଧାରଣ ରୋଗ, ଶିରଗୃଣ୍ଠିଲା ଏହାର ପ୍ରଧାନ ଲକ୍ଷଣ । ଗୁଣିଆ ପ୍ରଥମେ ସ୍ଥାନାଧିଷ୍ଠାତ୍ରୀ ସମ୍ଲାଇ ଦେବୀଙ୍କର କୋପଶାନ୍ତି ନିମିତ୍ତ ପୂଜା ଓ ବଳିର ବିଧାନ ଦିଏ । ତତ୍ପରେ ସାମାନ୍ୟ ଜ୍ୱରକ୍ରାନ୍ତ ରୋଗୀର ରୋଗଚର୍ଯ୍ୟା କରେ, ମାତ୍ର ଚଞ୍ଚଳମସ୍ତିଷ୍କ ରୋଗୀ ଉପରେ ସେ ଝାଡ଼ଣ ବଳ ପ୍ରୟୋଗ କରିଥାଏ । ପାଞ୍ଚ ଛଅଜଣ ଲୋକ ରୋଗୀକୁ ଧରି ବସାଇ ରଖନ୍ତି; ତତ୍ପରେ ସେ ବିଡ଼ବିଡ଼ ହୋଇ କେତେକ ଶବ୍ଦ ଉଚ୍ଚାରଣ କରେ ଓ ବାରମ୍ବାର ରୋଗୀର ମୁଣ୍ଡ ଫୁଙ୍କେ । ଏଥିରେ ରୋଗୀ ବିଶେଷ ଭାବରେ ଉତ୍ତ୍ୟକ୍ତ ହୋଇ ଅସୀମ ଶପଥ କରେ ଓ ଅକଥ୍ୟ ଭର୍ତ୍ସନା କରି ଅଭିଶାପ ଦିଏ । ରୋଗୀର ଏହି ସବୁ କାର୍ଯ୍ୟ ଭୌତିକ କ୍ରିୟା ବୋଲି ଗୃହୀତ ହୁଏ । ଘୋଡ଼ାଖୁରି ପୋଡ଼ି ରୋଗୀର ମୁଣ୍ଡ ପାଖରେ ଧରା ହୁଏ, ଧୂଆଁ ଯାକ ରୋଗୀର ନାକରେ ପଶେ । ତେଣୁ ତାହାର ବିରକ୍ତି ଅତମାତ୍ରାରେ ବର୍ଦ୍ଧିତ ହୁଏ । ସେ ଭୟଙ୍କର ରୂପ ଧାରଣ କରେ, ଧରିବା ଲୋକଙ୍କ ହସ୍ତରୁ ଉଦ୍ଧାର ପାଇବା ନିମିତ୍ତ ପ୍ରବଳ ଚେଷ୍ଟା କରିବା ଦ୍ୱାରା ପରିକ୍ଳାନ୍ତ ହୋଇ ଅବଶେଷରେ ଅଜ୍ଞାନ ଅବସ୍ଥାରେ ପଡ଼ିରହେ । ଶ୍ୱାସ ଗମାଗମ ବନ୍ଦହୁଏ ! ଆହୁରି ଅଧିକ ଶ୍ୱାସ ବନ୍ଦହେବା ଲାଗି ସେମାନେ ତାହାକୁ ଘୋଡ଼ାଇ ରଖନ୍ତି । ଏଥିରେ ଜ୍ୱର ଛାଡ଼ିଯାଏ । ରୋଗୀ ପ୍ରାୟ ୧୨ ଘଣ୍ଟା ଶୋଇ ରହେ । ଉଠିବାବେଳେ ସେ ଏପରି ଶୀର୍ଣ୍ଣ ହୋଇଥାଏ ଯେ, ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ଏହି ପ୍ରକାରେ ତାହାର ମତ୍ତତା ଛାଡ଼ିଯାଏ, ମାତ୍ର ଏପରି କରିବା ଦ୍ୱାରା ଜଣେ ପ୍ରକୃତିସ୍ଥ ଲୋକକୁ ପ୍ରାଣହୀନ କରିବାକୁ ପଡ଼େ । ଯଦି ରୋଗୀ ଅକ୍ଳାନ୍ତ ଚେଷ୍ଟା କରିବାକୁ ଅଶକ୍ତ ହୁଏ, ତେବେ ଗୁଣୀ କହେ ଯେ, ସେ ଭୂତକୁ ସେ ଛଡ଼ାଇ ପାରିବ ନାହିଁ ।

ଏମାନଙ୍କ ମଧ୍ୟରେ Mechanics ଜ୍ଞାନର ପରିଚୟ ପାଇ ମୁଁ ବିସ୍ମିତ ହୋଇଥିଲି । ଏଥିରୁ ମନେ ହୁଏ ଯେ ଏହି ବିଦ୍ୟା ଦିନେ ସେମାନଙ୍କୁ ବିଦିତ ଥିଲା । ସେମାନେ ତରାଜୁ (Scales) ପରିବର୍ତ୍ତରେ ବିଶାକାଠି (Stilliards) ବ୍ୟବହାର କରନ୍ତି । ପ୍ରତ୍ୟେକ ବିଷୟରେ ଅଜ୍ଞତା ଯଦି ପ୍ରାକୃତିକ ଅବସ୍ଥା ଧରାଯାଏ, ତେବେ ଏହା କହାଯାଇ ପାରେ ଯେ, ଏଠାର ଅଧିବାସୀମାନେ ସମ୍ପୂର୍ଣ୍ଣ ପ୍ରକୃତିସ୍ଥାବକ; କାରଣ ଜ୍ଞାନଶକ୍ତିର ବିକାଶ ସମ୍ବନ୍ଧରେ ସେମାନେ ସଦ୍ୟଜାତ ଶିଶୁ ସଦୃଶ ନିରାଭରଣ ଅଟନ୍ତି ।

ଆକବର ଦେବାନପଦରେ ଦୃଢ଼ଭାବରେ ବସିବାମାତ୍ରକେ ମୁଁ ହୀରା ବ୍ୟବସାୟ ସେନ ତାଙ୍କ ସହିତ କଥୋପକଥନ କରିଥିଲି । ଏଥିରେ ଏକ ଭୟାନକ ବିପଦ ଉଠିଲା । କାରଣ ସର୍ଦ୍ଦାର ଖାଁ ଦେବାନଙ୍କଠାରେ କହିଥିଲା ଯେ, ସେ ଲର୍ଡ କ୍ଲାଇବଙ୍କୁ ହୀରାଖଣ୍ଡିଏ ଦେଇଥିଲା ଓ ସେ ହୀରାର ମୂଲ୍ୟ ସ୍ଥିର କରିବା ପାଇଁ ମୁଁ ତାଙ୍କ ଦ୍ୱାରା ପ୍ରେରିତ ହୋଇଥିଲି । ମୋର ପ୍ରୟୋଜନୀୟ ଖରଚ ଅପେକ୍ଷା ଅଧିକ ଅର୍ଥ ମୁଁ ସଙ୍ଗରେ ଆଣି ନ ଥିଲି । କଟକରେ ମୋ ନାମରେ ଟଙ୍କା ଜମା ଥିଲା । ଆବଶ୍ୟକ ହେଲେ ପଠାଇ ପାରନ୍ତି । ଏହି ସତର୍କତା ଅବଲମ୍ବନରେ ମୋର ଚତୁରତା ପ୍ରକାଶ ପାଇଥିଲା । କାରଣ ମୋଠାରେ ଟଙ୍କା ଥିଲେ ଆକବର ନିଶ୍ଚୟ ବଳପୂର୍ବକ ତାହା ଅପହରଣ କରି ନିଜର ପ୍ରାପ୍ୟ ଆଦାୟ କରିଥାନ୍ତା । ମୁଁ ତାକୁ କହିଥିଲି ଯେ, ହୀରାର ଦାମ ଟ ୩୫୦୦୲ ହେବାର ଓକିଲ ସ୍ଥିର କରିଥିଲା ଓ ମୁଁ ତାହା ଦେବାପାଇଁ ପ୍ରସ୍ତୁତ ଥିଲି । ସେ ଟ ୬୦୦୦୲ ଜିଦ ଧରିଥିଲା ଓ ବିରକ୍ତ ହୋଇ ଚାଲିଗଲା ।

ପରଦିନ ମୋତେ ବା ମୋର ଲୋକମାନଙ୍କୁ କେହି କିଛି ଖାଦ୍ୟସାମଗ୍ରୀ ନ ଦେବାର ବା ଆମ୍ଭମାନଙ୍କ ସହିତ କଥୋପକଥନ ନ କରିବାର ଘୋଷଣା ହେବାର ଦେଖି ମୁଁ ଅତିଶୟ ବିସ୍ମିତ ହେଲି । ଏହା ନିଶ୍ଚୟ ଏକ ଖାମଖେୟାଲି ଆଦେଶ । ମାତ୍ର ମୁଁ ଏଥିରେ ଯଥାସମ୍ଭବ ଭଲ ଭାବ ଦେଖାଇଥିଲି ଓ ଦେବାନକୁ ଖବର ଦେଇଥିଲି ଯେ ମୋର ସିପାହୀମାନେ

ଉପବାସ ଛଡ଼ା ଆଉ ସବୁ ସହ୍ୟ କରି ପାରିବେ । ଯଦି ପ୍ରଜାମାନେ ସେମାନଙ୍କଠାରୁ ପଇସା ନେଇ ଖାଦ୍ୟସାମଗ୍ରୀ ନ ଦିଅନ୍ତି, ତେବେ ତାହା ସବୁ ଜୋର ଜୁଲମ କରି ଆଣିଲେ ମୁଁ ସେମାନଙ୍କୁ ବାଧା ଦେଇ ପାରିବି ନାହିଁ । କୌଣସି ଏକ ଅପ୍ରାସଙ୍ଗିକ ଘଟନା ଯୋଗ ଏହି କଥା ଅନ୍ୟାନ୍ୟ ସ୍ଥଳରେ ବ୍ୟାପାର ସଦୃଶ ନିଷ୍ପତ୍ତି ହୋଇଥିଲା । ଅନ୍ୟାନ୍ୟ କାର୍ଯ୍ୟ ଉପଲକ୍ଷରେ ଟଙ୍କାର ଅଭାବ ହେବାରୁ ଆକବର ଏହି କଣେପଧାଙ୍କ୍ଷ ପରିହାର କରି ମୋଠାରୁ କେତେ ଖଣ୍ଡ ହୀରା ପଠାଇଥିଲା । ତାହାର ମୂଲ୍ୟ ଆମ୍ଭେମାନେ ସ୍ଥିର କରିଥିଲୁଁ ଓ ସେଥିପାଇଁ କଟକରୁ ଟଙ୍କା ମଗାଇ ତାହାକୁ ଦେଇଥିଲୁଁ ।

ପୂର୍ବୋକ୍ତ ବ୍ୟବହାରରୁ ମୋର ଦାମ୍ଭିକତାର ପରିଚୟ ମିଳେ । ମୁଁ ଭଲରୂପେ ଜାଣିଥିଲି ଯେ, ଆକବର ସୁଦୃଢ଼ଭାବରେ ଦେବାନ ପଦରେ ବସି ନ ଥିଲା । କାରଣ ରାଜାଙ୍କର ଦୁଇ ଝିଅ ନିଜ ଗୃହ ଭିତରେ ନିଶ୍ଚିନ୍ତ ଥିଲେ । ସହରର ସେ ଅଞ୍ଚଳକୁ ଯିବାପାଇଁ ଦେବାନ ସାହସ କରୁ ନ ଥିଲା । ପକ୍ଷାନ୍ତରରେ ସେମାନଙ୍କ ସହିତ ମୋର ଉଦ୍ଦେଶ୍ୟ ବ୍ୟବହାର ଚଳୁଥିଲା । ତାହା ଛଡ଼ା ମୋର ସିପାହୀମାନେ ସୁସ୍ଥ ହୋଇଥିବାରୁ ସୈନ୍ୟଚାଳନ ଶିକ୍ଷା କରୁଥିବାବେଳେ ବେଶ ସମ୍ମାନାର୍ହ ଦେଖାଯାଉଥିଲେ ।

ଶାସନକର୍ତ୍ତାଙ୍କ ସହିତ ଏବେ ଏକତା ସ୍ଥାପିତ ହେବାରୁ ଯେଉଁ ସବୁ ସ୍ଥାନରେ ହୀରା ମିଳେ, ତାହା ଦେଖିବାକୁ ଯିବାପାଇଁ ଅନୁମତି ପ୍ରାର୍ଥନା କଲି । ମାତ୍ର ଏଥିରେ ରାଜମନ୍ତ୍ରୀ ବହୁ ସନ୍ଦେହପୂର୍ଣ୍ଣ କଥା ଉଠାଇଥିଲେ । ସେ ପ୍ରଥମେ କହିଲେ—ନଦୀରେ ଏତେ ପାଣି ଯେ କିଛି ଦେଖିବାକୁ ମିଳିବ ନାହିଁ, ତପୂରେ ଦେଶରେ ଅଶାନ୍ତି ମଧ୍ୟ ବିରାଜିତ, ଆଉ ସେ ଅଞ୍ଚଳର ବାସିନ୍ଦାମାନଙ୍କର ବ୍ୟବହାର ଏତେ ରୁକ୍ଷ ଓ ବିପଜ୍ଜନକ ଯେ ସେମାନଙ୍କୁ ବିଶ୍ୱାସ କରିବା ଅନୁଚିତ । ମୁଁ ଜିଦ୍ ଧରିଥିଲି ଓ ସେ ଫାଙ୍କି ଦେବାର ଚେଷ୍ଟା କରିଥିଲେ । ଅବଶେଷରେ ହାସ୍ୟ ଉଲ୍ଲାସରେ ତାଙ୍କଠାରୁ ଅନୁମତି ଆଦାୟ କରିଥିଲି ।

ସେ ନଜର ଜାମାତାକୁ ମୋର ପଥପ୍ରଦର୍ଶକରୂପେ ଓ ଦଳେ ଧନୁର୍ଦ୍ଧାରୀ ପ୍ରହରୀରୂପେ ପଠାଇଥିଲେ । କାଳେ ମୋର ସୈନ୍ୟମାନଙ୍କର ଆଡ଼ମ୍ବରରେ ଗୋଳମାଳ ଘଟିବ, ସେଥିପାଇଁ ସେମାନଙ୍କୁ ସଙ୍ଗରେ ନେବା ପାଇଁ ମୁଁ ଅନିଚ୍ଛୁକ ଥିଲି । ଜୁଲାଇ ୧୬ ତାରିଖରେ ମି. ରବ ଓ କେତେକ ଭୃତ୍ୟ ସେନି ମୁଁ ଯାତ୍ରା କଲି । ଦିନସାକ ମହାନଦୀ କୂଳରେ ୧୦ ମାଇଲ ପଥ ଯାଇଥିଲୁଁ । ପ୍ରାୟ ସର୍ବତ୍ର ମହାନଦୀର ପାଣି ଭେଦ କରି ପ୍ରସ୍ତରଖଣ୍ଡମାନ ଉପରକୁ ଉଠିଥିବାର ଦେଖିଲି । ସେ ଦିନ ଏକ ପାହାଡ଼ର ପାଦଦେଶରେ ରାତ୍ରି ଯାପନ କରିଗଲି । ପରଦିନ ସକାଳେ ତିନି ମାଇଲ ଅତିକ୍ରମ କଲା ପରେ ନଦୀମଧ୍ୟକୁ ପଶିଯାଇଥିବା ଗୋଟିଏ ପାହାଡ଼ର ପାର୍ଶ୍ୱ-ଦେଶ ଭେଦ କରି ଇବ (Hebe) ନଦୀର ମୁହାଣରେ ଉପସ୍ଥିତ ହୋଇଥିଲୁଁ । ଏହିଠାରେ ହୀରା ମିଳିଥାଏ । ଏହି ଅମୂଲ୍ୟ ସ୍ଥାନର ତତ୍ତ୍ୱାବଧାନ ନିମିତ୍ତ ରାଜାଙ୍କର ଜଣେ କର୍ମଚାରୀ ଅଛି । ସେ ମାତ୍ର ତିନୋଟି ଭୃତ୍ୟ ସହ ମୋ ସଙ୍ଗରେ ସାକ୍ଷାତ କରିଥିଲା । ମୁଖରେ ସ୍ୱାଭାବିକତା, ସ୍ୱରରେ କର୍କଶତା, ବାକ୍ୟରେ ଅବୈଧ ମିତଭାଷିତା ଓ ଧୃଷ୍ଟତା-ପ୍ରଦର୍ଶନଲିପ୍ସା ଏକତ୍ର ମିଳିତ ହୋଇଥିବାରୁ ତାଦୃଶ ଅପ୍ରୀତିକର ମାନବମୂର୍ତ୍ତି ମୁଁ କେବେ ହେଲେ ଦେଖି ନ ଥିଲି । ମି: ରବ ଏତେଦୂର ବିରକ୍ତ ହୋଇଥିଲେ ଯେ, ତାକୁ ଆଚ୍ଛା କରି ଶିକ୍ଷା ଦେବାପାଇଁ ପ୍ରସ୍ତାବ କରିଥିଲେ । ସେ ନରାଧମ ପଶୁ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଚାରିଲା ଯେ, କି କୌତୂହଳର ବଶବର୍ତ୍ତୀ ହୋଇ ମୁଁ ସେଠାକୁ ଯାଇଥିଲି । ଲାଲ ଥାନ ଦୁଇ ଗଜ ଉପହାର ଦେଇ ତାକୁ ଖୁସି କରିବା ପରେ ସେ ସବୁ କଥା ଆପେ କହିଥିଲା । ସେ ମୋତେ କହିଲା ଯେ, ବର୍ଷା ପରେ ଇବନଦୀରୁ ହୀରା ଖୋଜିବା ତାହାର କାର୍ଯ୍ୟ । ପର୍ବତରୁ ଧୋଇ ଆସିଥିବା ଲାଲ ମାଟିରେ ସର୍ବଦା ହୀରା ମିଳେ । ତହିଁ ମୁଁ କହିଲି ଯେ, ପାହାଡ଼କୁ ଯାଇ ମାଟି ଖୋଳିବା କି ଭଲ ନୁହେଁ ? ସେ ଉତ୍ତର ଦେଲା ଯେ, ମରହଟ୍ଟାମାନେ ତାହାର ଉପରେ ଦେଶରୁ କର ଆଦାୟ ନ କରିବା ପର୍ଯ୍ୟନ୍ତ ତାହା କରାଯାଉଥିଲା । ବର୍ତ୍ତମାନ ତାହା କଲେ ସେମାନେ କର ବୃଦ୍ଧି କରି

ବସିବେ । ସେ ମୋତେ ଅନେକଗୁଡ଼ିଏ ଲାଲ ମାଟିର ଗଦା ଓ କେତେଗୁଡ଼ିଏ ଗୋଡ଼ି ଆକାରର ମାଟି ଦେଖାଇଲେ । ସେଗୁଡ଼ିକ ସେପର୍ଯ୍ୟନ୍ତ ଇଟାଗୁଣ୍ଡା ସଦୃଶ ଦେଖାଯାଉଥିଲେ । ତାହା ପାଣିରେ ଧୋଇ ହୋଇ ଆସିଥିଲେ ଓ ତହିଁରୁ ହୀରା କାଢ଼ି ନିଆ ହୋଇଥିଲେ । ନଦୀର ଜନ୍ମସ୍ଥାନ ଦେଖିବାକୁ ଯିବାପାଇଁ ମୁଁ ଇଚ୍ଛା ପ୍ରକାଶ କରିଥିଲି, ମାତ୍ର ମୋର ପଥ-ପ୍ରଦର୍ଶକ କହିଲେ ଯେ, ବର୍ଷାଦିନେ ତାହା ଏକାନ୍ତ ଅସମ୍ଭବ । ଯେଉଁ-ଠାରେ ଇବ ମହାନଦୀରେ ପଡ଼ିଅଛି, ସେଠାରେ ତାହାର ଓସାର ୨୦୦ ଗଜ । ମୁଁ ସେଠାକୁ ନୌକାରେ ଯାଇଥିଲି । ସେଠାରେ ମାଇଲିଏ ଲମ୍ବା ଗୋଟିଏ ଗଣ୍ଡ ଅଛି । ତାହାର ତୀରଭୂମି ଘନବନାକୀର୍ଣ୍ଣ । ମୁଁ ଅଳ୍ପ ବଷ୍ଟରେ ପ୍ରାୟ ଦୁଇ ମାଇଲ ଯାଏ ନୌକା ଚଳାଇ ଯେଉଁଠାରେ ପାହାଡ଼ ଉପରୁ ନଦୀ ଖସିଅଛି, ସେଠାକୁ ଯାଇଥିଲି । ସେଠାରେ ବୁଝିଲି ଯେ, ମୋର ପଥପ୍ରଦର୍ଶକ ଯାହା କହିଥିଲେ, ତାହା ଅକ୍ଷରେ ଅକ୍ଷରେ ସତ୍ୟ । ମୁଁ କିନ୍ତୁମାତ୍ର ଅସନ୍ତୁଷ୍ଟ ନ ହୋଇ ଫେରି ଆସିଲି ।

ମହାମତ **ବଏଲ୍**[୧] (Boyle) ପ୍ରତିପନ୍ନ କରିଅଛନ୍ତି ଯେ, ସ୍ୱଚ୍ଛ ରତ୍ନର ସାରାଂଶ ଦିନେ ତରଳ ପଦାର୍ଥର ସମଷ୍ଟି ଥିଲେ, ତତ୍ପରେ ପ୍ରସ୍ତରୀଭୂତ ତରଳ ବସ୍ତୁ କୌଣସି ବିଶିଷ୍ଟ ପ୍ରକ୍ରିୟାଦ୍ୱାରା ଉତ୍କ୍ଷିପ୍ତ ହୋଇ ସ୍ଫଟିକାକାର ଧାରଣ କରିଅଛି । ସେହି ତରଳ ପଦାର୍ଥ କେବେ କେବେ ବାଷ୍ପାକାରରେ ମଧ୍ୟ ଉତ୍ଥିତ ହୁଏ । ହୀରକର କଠିନତା ଦେଖି **ଜୋନହିରାସ** (Jonehierus) ଏହି ଅନୁମାନ ସନ୍ଦେହମୂଳକ ବୋଲି ସ୍ଥିର କରି ଅଛନ୍ତି । ଅନ୍ୟ ଜଣେ ଫରାସୀ ପଣ୍ଡିତ ଏହାକୁ ଫସଫରସରେ ପରିଣତ କରିଅଛନ୍ତି ଓ ଅନ୍ୟାନ୍ୟ ପରୀକ୍ଷାକାରୀ ପଣ୍ଡିତମାନେ ଏହାକୁ ବାଷ୍ପାକାରରେ ଉଡ଼ାଇଦେବାର ମଧ୍ୟ ଶୁଣା ଅଛନ୍ତି । **ଟେଭାରନିଅର**[୩] (Taveranier) ଓ ଅପରାପର ଅନେକେ କହନ୍ତି ଯେ, ଏହା ଚକମକି ପଥରର ଫାଙ୍କ ଭିତରେ ସୃଷ୍ଟି ହୁଏ । ମାତ୍ର ମୁଁ ଯେତେବେଳେ ହୀରା ମିଳୁଥିବା ସ୍ତରର

୧ । ବୈଜ୍ଞାନିକ ୨ । ବୈଜ୍ଞାନିକ ୩ । ଯୁରୋପୀୟ ପର୍ଯ୍ୟଟକ

ନମୁନା ଏଠାରୁ ଓ ବୁନ୍ଦେଲଖଣ୍ଡରୁ ପାଇଅଛି ଏବଂ ଏହା ମାଟି ସଦୃଶ ବୋଲି ବୁଝିଅଛି, ତେଣୁ ମୁଁ ସ୍ଥିର କରୁଅଛି ଯେ, ଆଗ୍ନେୟଗିରି ଇତ୍ୟାଦିର ଅଗ୍ନିର କାର୍ଯ୍ୟ ଛଡ଼ା ଏହା ହୋଇ ନ ପାରେ । ବୋଧହୁଏ, ଉଦପେକ୍ଷା ଅଧିକ ଉତ୍ତାପରେ ପ୍ରସ୍ତରୀଭୂତ ତରଳ ପଦାର୍ଥ ଏବଂବିଧ ଅବସ୍ଥାରେ ପରିଣତ ହୁଏ । ଏହି ବିଷୟରେ ମୁଁ କେତୋଟି ପରୀକ୍ଷା କରିଅଛି; ବହୁ ଶାସ୍ତ୍ର ଅଧ୍ୟୟନ କରିଅଛି ଓ ବହୁତ ଭାବିଅଛି । ଏଣିକି ମୋର ଅନୁମାନଗୁଡ଼ିକ ସଂଗ୍ରହ କରିବାରେ ସଚେଷ୍ଟ ହେବି ।

୧୯ ତାରିଖ ଜୁଲାଇ—ଫେରିବାବେଳେ **ନାଗବଂଶ*** (Naik Bunsa) ଦେଖିବାକୁ ଯାଇଥିଲି । ଏହି ଅଜଗର ସର୍ପକୁ ପାର୍ବତ୍ୟ-ପ୍ରଦେଶର ରାଜାମାନେ ପୂଜା ଦିଅନ୍ତି । ତାହା ପୃଥିବୀ ସୃଷ୍ଟିକାଳରୁ ଅଛି ଓ ତାହାର ମୃତ୍ୟୁରେ ପ୍ରଳୟ ଉପସ୍ଥିତ ହେବ । ଗୋଟିଏ ପର୍ବତର ଗୁହାରେ ସେ ଥାଏ । ଗୁହାମୁହଁ ନିକଟରେ ୪୦୦ ଗଜ ଖଣ୍ଡିଏ ପଡ଼ିଆ ଅଛି । ପଡ଼ିଆର ଗୁରିଆଡ଼େ ଖାଇ ଅଛି । ମୁଁ ବୁଝିଲି ଯେ, ସେ ସପ୍ତାହରେ ଥରେ ବାହାରେ । ଯେଉଁମାନେ ମାନସିକ କରିଥାନ୍ତି, ସେମାନେ ଏହି ସମୟରେ ଛେଳି ବା କୁକୁଡ଼ା ଆଣି ଏହି ପଡ଼ିଆରେ ଛାଡ଼ି ଦିଅନ୍ତି । ସକାଳ ପ୍ରାୟ ୯ଟା ବେଳେ ତାହାର ବାହାରିବାର ଖବର ପାଇଲି । ପଡ଼ିଆର ବିପରୀତ ଦିଗରେ ବନ୍ଧ ଉପରେ ମୁଁ ଠିଆ ହେଲି । ତାହାର ଶରୀର ଅଚଳ, ସାଧାରଣ ସାପ ସଦୃଶ ଲମ୍ବା ଅପେକ୍ଷା ଅଧିକ ମୋଟା, ପାରସିକମାନଙ୍କ ଦ୍ୱାରା କଥିତ ଅଜଦା (Ajdha) ଜାତୀୟ ସର୍ପ ସଦୃଶ ଅନୁମିତ ହେଲା । ତାହାପାଇଁ ଗୋଟିଏ ଛେଳି ଓ କେତେଗୁଡ଼ିଏ କୁକୁଡ଼ା ଛଡ଼ା ହୋଇଥିଲା । ସେ ମୁହଁରେ ଛେଳିଟି ଧରି ଗିଳିଦେବା ନିମନ୍ତେ କିଛିକ୍ଷଣ ଚେଷ୍ଟା କଲା । ଏହି ସମୟରେ ସେ ତାହାର ଲାଙ୍ଗୁଡ଼ ଜୋରରେ କମ୍ପାଉଥାଏ । ତତ୍ପରେ ଖାଇରେ ଏଣେ ତେଣେ ବୁଲି

* ୧୮୭୪ ରେ V. Ball ଏହି ସାପ କଥା ତାଙ୍କ Jangle life ବହିରେ ଉଲ୍ଲେଖ କରିଅଛନ୍ତି । ସେତେବେଳେ ସାପଟି ନ ଥିଲା ।

ଦେଖିଲି ଯେ, ପାଣି ପିଇ କାଦୁଅରେ ଗଡ଼ି ବୁଲିଲା ଓ ତାହାର ଗୁହା ଭିତରକୁ ଚାଲିଗଲା । ଉପରର୍ଓ୍ୱଲ ମି. ରବି ଓ ମୁଁ ପାଣି ପାର ହୋଇ କାଦୁଅରେ ପଡ଼ିଥିବା ଦେହର ଚୋଖସ୍ତ ଚିହ୍ନ ଦେଖିଲୁଁ । ଏହାର ମାପ ଦୁଇ ଫୁଟରୁ ଅଧିକ ବୋଲି ଅନୁମିତ ହେଲା ।

କିଛିଦିନ ପରେ ମୁଁ ସେଠାରୁ ଫେରି ଆସିଲି । ରବି ଏ ଦେଶର ଜ୍ୱରଜ୍ୱାରା ଆକ୍ରାନ୍ତ ହେଲା । ଉପରର୍ଓ୍ୱଲ ଚା ଖାଇ ବସିଥିଲୁଁ । ସେ ଉଚ୍ଚୈଃସ୍ୱରରେ କଥା କହୁଥିବାର ଶୁଣାଗଲା । ମୁଁ ତାହାର ହାତ ଧରି ଦେଖିଲି ଯେ ତାହାର ଖୁବ ଜ୍ୱର ହୋଇଥିଲା । ତାକୁ ଶୋଇବାକୁ କହିଲି । ମୃତ୍ୟୁ ପର୍ଯ୍ୟନ୍ତ ସେ ଆଉ ଶେଯରୁ ଉଠି ନ ଥିଲା, ତିନିଦିନଯାଏ ତାହାର ଚୈତନ୍ୟ ରହିଥିଲା । ମୋର ୟୁରୋପବାସୀ ଭୃତ୍ୟ ଚାର୍ଲସ୍ ସ୍ମିଥ୍ ମଧ୍ୟ ଏହି ଜ୍ୱରରେ ପ୍ରାଣ ହରାଇଥିଲା । ମୁଁ ଯେତେବେଳେ ତାହାର ସମାଧିସୂକ୍ତ ପାଠ କରିଥିଲି, ସେତେବେଳେ ମୋ ଲାଗି ଏ କାର୍ଯ୍ୟ କରିବାକୁ କେହି ପାଖରେ ନାହାନ୍ତି ଭାବି ମୋର ଗଭୀର ଦୁଃଖ ହୋଇଥିଲା ।

ମୋ ସହିତ କେହି ୟୁରୋପବାସୀ ନ ଥିବାରୁ ଏହି ସ୍ଥାନ ତ୍ୟାଗ କରିବା କମିଟି ଇଚ୍ଛୁକ ହୋଇଥିଲି । ଆଉ ମଧ୍ୟ ଏଠାରେ ମୋର କିଛି ବିଶେଷ କାର୍ଯ୍ୟ ନ ଥିଲା; ମାତ୍ର ବର୍ଷାଯୋଗୁଁ ବାଧା ପଡ଼ିଲା । ମୁଁ ଜାଣି ପାରିଲି ଯେ, ଏ ଦେଶର ଲୋକେ ମୋର ସିପାହୀମାନଙ୍କୁ ବଶୀଭୂତ କରିଥିଲେ । ଜଣେ ସିପାହୀ ମୋତେ ତ୍ୟାଗ କରି ଚାଲିଗଲା । ମୁଁ ସେମାନଙ୍କର ପ୍ରକୃତି ଜାଣି ମଧ୍ୟ ସେମାନଙ୍କଠାରେ ବିଶ୍ୱାସ ସ୍ଥାପନ କରିବା ଉଚିତ ମନେ କରିଥିଲି । ଜୁଲାଇ ମାସ ପର୍ଯ୍ୟନ୍ତ ସେମାନଙ୍କର ବେତନ ଦେଇ ଦେଲି । ତତ୍ପରେ ମୋର ବାକ୍‌ଶକ୍ତି ବଳରେ କେଉଁ ଦେଶରେ ଥିଲୁଁ, କେଉଁ ଦେଶରେ ଅଛୁଁ, ସେ ଉଭୟ ଦେଶର ମହିମା ତୁଳନା କରି ବୁଝାଇଦେଲି ଓ କହିଲି ଯେ, ସେ ରମଣୀୟ ଦେଶ ପୁନର୍ବାର ଦେଖିବାର ଏକମାତ୍ର ଉପାୟ ମୋ ପାଖରେ ରହିଲେ ସମ୍ଭବ ହୋଇ ପାରିବ, ଭଲ ପାଗ ହେଲା ମାତ୍ରେକେ ମୁଁ ସେମାନଙ୍କୁ ସେ ସ୍ଥାନକୁ ନେଇଯିବି । ମୋର

ସରଳତା ଦେଖି ସେମାନେ ଅବାକ୍ ହୋଇଗଲେ । ଏକ ବାକ୍ୟରେ ମୋର ବିଶ୍ୱସ୍ତ ଥିବାର କହି ଜଣେ ସୁଦ୍ଧା ମୋର ସଙ୍ଗ ତ୍ୟାଗ କଲେ ନାହିଁ ।

ଓଡ଼ିଶାର ପୂର୍ବତନ ସୁବାଦାର ଶିବଭଟ୍ଟ ନାଗପୁରରୁ ବନ୍ଦୀରୂପେ ପ୍ରେରିତ ହୋଇଥିଲେ । **ଦେଓଗଡ଼**ରୁ† ତୀର୍ଥଯାତ୍ରା କରିବାର ଛଳନା କରି ସେଠାରୁ ପଳାଇ ଆସି **ସୁଜା-ଉଦ୍ଦୌଲା**ର ରାଜ୍ୟରୁ ପଳାଇଲେ । କ୍ଲାଇବଙ୍କ ସଙ୍ଗେ ସାକ୍ଷାତ୍ ପ୍ରାର୍ଥନା କରି ମନୋରଥ ସିଦ୍ଧି ନ ହେବାରୁ ୩୦ ଜଣ ଲୋକ ନେଇ ଫେରି ଆସିଲେ । ଓଡ଼ିଶାର ବହୁ ଅସନ୍ତୁଷ୍ଟ ଜମିଦାର ତାହାର ପତାକାତଳେ ଉପଗତ ହୋଇଥିଲେ । ସେ **କୁଜଙ୍ଗ**ରେ * (Coonjur) ସେନାନିବାସ କରି ରହିଲେ । ଏହିଠାରେ ମହାନଦୀ ସମୁଦ୍ରରେ ପଡ଼ିଅଛି । ଏଠାରୁ ନୌକାଯୋଗେ ନଦୀରେ ସୈନ୍ୟଦଳ ପଠାଇ କଟକର ନିକଟବର୍ତ୍ତୀ ସ୍ଥାନମାନ ପୋଡ଼ି ଦେଲେ । ନିଜର ପ୍ରତିପତ୍ତି ବଢ଼ାଇବାପାଇଁ ସେ ଜମିଦାରମାନଙ୍କୁ କହିଥିଲେ ଯେ, ଇଂରେଜମାନେ ତାକୁ ସାହାଯ୍ୟ ଦେବାଲାଗି ପ୍ରତିଶ୍ରୁତ ହୋଇଅଛନ୍ତି । ସେ ମୋତେ ମଧ୍ୟ ଖଣ୍ଡିଏ ପତ୍ରରେ ଲେଖିଥିଲେ ଯେ, ଲର୍ଡ କ୍ଲାଇବଙ୍କ ଆଦେଶମତେ ସେ ଓଡ଼ିଶା ଅଧିକାର କରିବାକୁ ଆସିଅଛି ଓ ତାଙ୍କର ଅଭିପ୍ରାୟମତେ କାର୍ଯ୍ୟ କରିବାକୁ ମୁଁ ବାଧ୍ୟ । ଏହି ପତ୍ର ଭବାନୀ ପଣ୍ଡିତ ହାତରେ ପଡ଼ିଲା । ସେ ନାନା ଅନୁଯୋଗ କରି ତାହା ମୋଠାକୁ ପଠାଇ ଦେଇଥିଲେ । ମୁଁ ବିପଦ ଆଶଙ୍କା କରି ଅବିଳମ୍ବେ ଉତ୍ତରରୂପେ ଜଣାଇଲି ଯେ ଶିବଭଟ୍ଟର ସମସ୍ତ କଥା ମିଥ୍ୟା ଅଟେ ; ଲର୍ଡ କ୍ଲାଇବଙ୍କୁ ଲେଖିଲେ ସତ୍ୟ ମିଥ୍ୟା କଥା ସେ ଜାଣି ପାରିବେ । ଭବାନୀ ପଣ୍ଡିତ ମୋର ଚିଠି ପାଇବା ଆଗରୁ ଲର୍ଡ କ୍ଲାଇବଙ୍କୁ ଲେଖିଥିଲେ । ପ୍ରତ୍ୟୁତ୍ତରରେ ମହାମହିମ ତାଙ୍କୁ ଆଶ୍ୱାସନା ଦେଇ ଲେଖିଥିଲେ ଯେ ଶିବଭଟ୍ଟର ସମସ୍ତ କଥା ମିଥ୍ୟା, ଆଉ ଆବଶ୍ୟକ ହେଲେ ତାହାର ସର୍ବନାଶ କରିବାପାଇଁ ସେ ମଧ୍ୟ ସୈନ୍ୟ ସାହାଯ୍ୟ କରିବେ ।

---

† ଦେଓଗଡ଼ର ବୈଦ୍ୟନାଥ ମନ୍ଦିର ।
* ଇଂରାଜୀ ଲେଖାରୁ ବୋଧ ହେଉଅଛି ପାଠ ହେଉଥିଲେ ମଧ୍ୟ ଏହା ପ୍ରକୃତରେ କୁଜଙ୍ଗ ।

ଦିନକୁ ଦିନ ସମସ୍ୟା ମୋତେ ଅତିଶୟ ଦୁର୍ବହ ହୋଇଥିଲା । ମୁଁ କେବେ ସମ୍ବଲପୁର ଛାଡ଼ିବି, ସେଦିନ ପ୍ରତି ଉତ୍କଣ୍ଠିତ ହୋଇ ଚାହିଁଥିଲି । ସମ୍ବଲପୁରରେ ମୋତେ ସର୍ବଦା ପ୍ରହରୀ ଭଳି ସତର୍କ ହୋଇ ରହିବାକୁ ପଡ଼ୁଥିଲା । ସେପ୍‌ଟେମ୍ବର ମାସର ପ୍ରାରମ୍ଭରେ **ବାବୁ ଖାଁ** ଭବାନୀ ପଣ୍ଡିତଙ୍କୁ ସାହାଯ୍ୟ କରିବାପାଇଁ ଜାନୁଜୀଙ୍କ ଦ୍ୱାରା ପ୍ରେରିତ ହୋଇ ୩୦୦ ଅଶ୍ୱାରୋହୀ ସୈନ୍ୟ ସହ ସମ୍ବଲପୁର ନିକଟରେ ତମ୍ବୁ ପକାଇଲା । ସେ ରାଜାଙ୍କଠାରୁ ଖାଦ୍ୟଦ୍ରବ୍ୟ ଓ ଅର୍ଥ ଦାବି କଲା । ତାହା ନ ପାଇବାରୁ ସହର ଅବରୋଧ କରି ତାହା ଆକ୍ରମଣ କରିବା ଲାଗି ଧମକ ଦେଲା । ସେ ମୋର ସାହାଯ୍ୟ ପ୍ରାର୍ଥନା କଲା । ତାକୁ ଶୀଘ୍ର ବିଦାୟ କରିବା ପାଇଁ ମୁଁ ଆକବରକୁ ଉପଦେଶ ଦେଇଥିଲି ଓ ସହରର ଯେଉଁ ଅଞ୍ଚଳରେ ମୁଁ ଥିଲି, ତାହା ଆକ୍ରମଣ ନ କରିବାପାଇଁ ବାବୁ ଖାଁକୁ ସାବଧାନ କରାଇ ଦେଇଥିଲି । ଏହିଠାରେ ମୁଁ ଦଶଟି ଭଲ କମାଣ ସଜାଇ ରଖିଥିଲି । ରାଜାଙ୍କର ବିଳମ୍ବ ଦେଖି ବାବୁ ଖାଁ ଆକ୍ରମଣ କରିବା ଲାଗି ଉଦ୍ୟତ ହୋଇଥିଲା । ସେ ଗୋଟିଏ ହାତୀ ମୁଣ୍ଡରେ ଗୋଟିଏ କାଠର ଢାଲ ବାନ୍ଧି ତାହାକୁ ସଜ୍ଜିତ କଲା । ଏହି ଢାଲରୁ ଗୋଟିଏ ଶକ୍ତ ଲମ୍ବା ଗୋଜ ବାହାରିଥିଲା । ମାହୁନ୍ତ ଗୋଟିଏ ବଡ଼ କାଠ ବାକ୍‌ସରେ ବସି ଗୋଟିଏ ଫାଟକ ଭାଙ୍ଗି ତାହା ଭିତରେ ହାତୀ ଚଳାଇବାର ଚେଷ୍ଟା କରିଥିଲା । ମାତ୍ର ରାଜାଙ୍କର ଲୋକେ ବନ୍ଧୁକ ରୋଷଣୀ ଫାଟକ ଉପରୁ ପକାଇବାରୁ ହାତୀ ଭୟ କରି ଆକ୍ରମଣ ସକାଶ ଫାଟକ ନିକଟକୁ ଆସିଲା ନାହିଁ । ଅଳ୍ପଦିନ ପରେ ବାବୁ ଖାଁ ଚାଲିଗଲା ।

ଅବଶେଷରେ ସେପ୍‌ଟେମ୍ବର ମାସ ଶେଷରେ ବର୍ଷାକାଳ ଆରମ୍ଭରୁ ଗିରିଶୃଙ୍ଗ ଆଚ୍ଛାଦନକାରୀ ମେଘଖଣ୍ଡମାନ ଆପେ ତିରୋହିତ ହୋଇଗଲାରୁ ବର୍ଷାଋତୁ ଶେଷ ହେଲା । ମୁଁ ପ୍ରସ୍ଥାନର ଉଦ୍‌ଯୋଗ କଲି । ଅକ୍‌ଟୋବର ପହିଲାରେ ରାଜା ମୋ ସଙ୍ଗେ ଦେଖା କରିବାକୁ ଆସିଥିଲେ । ସେ ଯାହା ଦେଖିଲେ ତାହା ମାଗିଲେ, ଅତି କଷ୍ଟରେ ମୁଁ ମୋର କମ୍ପାସଟିକୁ

ରଖି ପାରିଲି । ୨ ତାରିଖ ଦିନ ସକାଳେ ମୁଁ ଯାଇ ବିଦାୟ ଘେନି ଆସିଲି । ସେମାନଙ୍କର ଇଂରେଜମାନଙ୍କ ସହିତ ଘନିଷ୍ଠତା ସମ୍ବନ୍ଧରେ ଅନେକ କଥା ଓ ଇଂରେଜ ଅଧୀନ ହୋଇ ରହିବାର ବଳବତୀ ଇଚ୍ଛା ଥିବା କଥା ରାଜା ମୋତେ କହିଲେ । ବିଦାୟକାଳରେ ଗୋଟିଏ ଅଡ଼କଣ ହୀରା ବସିଥିବା ମୁଦି ମୋତେ ସେ ଉପହାର ଦେଇଥିଲେ । ମୋର ମନେ ହେଲା, ସେମାନେ ମୋତେ ବିଦାୟ ଦେଇ ଆନନ୍ଦିତ ହୋଇଥିଲେ । କାରଣ ରାଜା ଓ ତାଙ୍କର ଭାଇମାନେ ଜାଣିଥିଲେ ଯେ, ହେବାନକୁ ବହିଷ୍କୃତ କରିବା ପାଇଁ ମୁଁ ସାହାଯ୍ୟ କରନ୍ତି ନାହିଁ; ଆଉ ଆକବର ଭୟ କରୁଥିଲା, କାଳେ ମୋର ମତ ପରିବର୍ତ୍ତିତ ହେବ । ଉପର ଓଳ ସହର ଓ ସହରତଳ ବୁଲି ଆସି ଛଅ ମାଇଲ ଦୂରବର୍ତ୍ତୀ ରାଜାଙ୍କ ବଗିଚାରେ ରହିଲି । କେତେଜଣ ବିଶିଷ୍ଟ ବ୍ୟକ୍ତି ସନ୍ଧ୍ୟାବେଳେ ମୋ ସହିତ ଦେଖା କରିବା ଲାଗି ଆସିଥିଲେ । ସେମାନେ ମୋତେ ଉପଦେଶ ଦେଇଥିଲେ ଯେ, ଆକବରର ବିଶ୍ୱାସଘାତକତା ଏଡ଼ାଇବା ପାଇଁ ମୁଁ ଯେପରି ପ୍ରତ୍ୟୁତ୍ପନ୍ନମତି ହୋଇ ଥିବି । କାରଣ ସେ ମୋତେ ହାଣିଦେବା ପାଇଁ ମୋ ପଛରେ ସୈନ୍ୟ ପଠାଇଅଛି । ମୁଁ ଉତ୍ତର ଦେଇଥିଲି ଯେ, ଏପରି ଅବସ୍ଥାରେ ଲର୍ଡ଼ କ୍ଲାଇବ ସୈନ୍ୟ ପଠାଇ ମୋର ମୃତ୍ୟୁର ପ୍ରତିଶୋଧ ନେବେ । ସୈନ୍ୟମାନେ କଷ୍ଟରୁ କମାଣ ଓ ତରବାରିରେ ଦେଶ ଛାରଖାର କରିଦେବେ ।

୩ ତାରିଖ ଅକ୍ଟୋବର । ଏହି ସଙ୍କେତରେ ମୁଁ ଉଦ୍ବିଗ୍ନ ହୋଇ ନ ଥିଲି, ମାତ୍ର ସତର୍କତା ଅବଲମ୍ବନ କରିବାକୁ ଛାଡ଼ି ନ ଥିଲି । ମୁଁ ନଦୀତୀରରେ ରହି ବେଦାରକାରୀ ସମସ୍ତ ଜିନିଷପତ୍ର ନୌକାରେ ବୋଝାଇ କରିଥିଲି ଓ ସମସ୍ତ ଭୃତ୍ୟମାନଙ୍କୁ ବର୍ଚ୍ଛା ଧରିବାକୁ ଦେଇଥିଲି । ବାଲେଶ୍ୱରରୁ ନେଇଥିବା ୨୦ ଜଣ ଲୋକଙ୍କ ହାତରେ ବନ୍ଧୁକ ଦେଇଥିଲି । ଭୋର ଘଣ୍ଟାବେଳେ ଉଠି ସକାଳ ଖିଆର ବାସନ କୁସନ ପଠାଇ ଦେଇ ଘାଟ ଉପରେ ପ୍ରସ୍ତୁତ କରି ରଖିବାକୁ କହିଥିଲି । ତମ୍ବୁ ଉଠାଇ ୧୩ ଜଣ ସିପାହୀ ଦଳରେ ପଠାଇଲି । ତାପରେ ମେଷାଲ ସରଞ୍ଜାମ

ଦେଇ ଅବଶିଷ୍ଟ ସିପାହୀମାନଙ୍କୁ ପଠାଇଲି । ସେମାନେ ଟିକିଏ ଦୂରକୁ ଗଲା ମାତ୍ରକେ ମୁଁ ଘୋଡ଼ାରେ ଚଢ଼ିବସିଲି । ମୋର ପାଲଙ୍କି ମଧ୍ୟ ସଙ୍ଗରେ ଥିଲା । ଏଥିରେ ବନ୍ଧୁକଧାରୀ ପଦାତି ଥିଲେ । ମୁଁ ସମସ୍ତଙ୍କୁ ପଛରେ ପକାଇ ବ୍ରେକ୍‌ଫାଷ୍ଟ ଟେବଲଠାରେ ଉପଗତ ହେଲି । ସେଠାରେ ବସି ଥାଏଁ, ସମସ୍ତେ ମୋତେ ଅତିକ୍ରମ କରି ଗଲେ । ସେମାନଙ୍କ ପଛେ ପଛେ ମୁଁ ମଧ୍ୟ ଗଲି । ବହୁ କର୍ଷିତ କ୍ଷେତ୍ର ଅତିକ୍ରମ କଲା ପରେ **ହୁମା** (Whoamah) ଗ୍ରାମରେ ଉପସ୍ଥିତ ହେଲି ଓ ଦୂରରେ ଗୋଟିଏ ବଗିଚାରେ ତମ୍ବୁ ଖଞ୍ଜିବାକୁ କହିଲି ।

ମହାନଦୀକୂଳରେ ହୁମା ଗୋଟିଏ ବଡ଼ ଗ୍ରାମ । ତାହାର ଚତୁର୍ଦ୍ଦିଗରେ ଜୀଅନ୍ତା ବାଉଁଶ ବଣର ବାଡ଼ ଅଛି । ପ୍ରଧାନ ମୋର ଲୋକମାନଙ୍କୁ ଗ୍ରାମ ମଧ୍ୟକୁ ଯିବାକୁ ଦେଲା ନାହିଁ ବା ମୋତେ ଭେଟିବାକୁ ଆସିଲା ନାହିଁ ; ମାତ୍ର ଜିନିଷ ବିକ୍ରୟ କରିବାପାଇଁ ଦୋକାନଦାରମାନଙ୍କୁ ପଠାଇ ଦେଲା । ସନ୍ଧ୍ୟାବେଳକୁ ସେମାନେ ସମସ୍ତେ ଗ୍ରାମକୁ ଫେରି ଗଲେ । ଯଦିଚ ମୁଁ ପ୍ରଧାନର (Commander) ଔଦ୍ଧତ୍ୟ ପସନ୍ଦ କରି ନ ଥିଲି, ତଥାପି ତାହାର ଉଦ୍ଧାତ୍ରୁର ଭାବ ଦେଖି ମୁଁ ବିଶେଷ ଚିନ୍ତିତ ହୋଇ ନ ଥିଲି ।

୪ ତାରିଖ ଅକ୍‌ଟୋବର । ଆଜିର ଯାତ୍ରା ଅକର୍ଷିତ ଓ ପାର୍ବତ୍ୟ ଭୂମି ଉପରେ ହୋଇଥିଲା । ହୁମାରୁ ୧୨ ମାଇଲ ଆସି ମୁଁ ସମ୍ବଲପୁର ସୀମା ଅତିକ୍ରମ କରି **ସୋନପୁର** (Sonepoor) ସୀମାରେ ପ୍ରବେଶ କଲି । ୧୩ ମାଇଲ ଆସି **ସିନ୍ଦୋଲ** (Sindole) ଠାରେ ରହିଲି । ଏହା ଗୋଟିଏ ଘାଟିର ମୂର୍ଦ୍ଧରେ ଅବସ୍ଥିତ । ଏଠାରେ କିଛି ଜିନିଷ ପତ୍ର ମିଳିଲା ନାହିଁ । ନୌକାରେ ମୋର ଅନେକ ଜିନିଷ ସଂଗୃହୀତ ଥିଲା । ସେଥିରୁ ଅନୁଚରମାନଙ୍କୁ ଭାଗ ଦେଇଥିଲି । ଏହି ଦିନ ରାତିରେ ଲେଙ୍କଡ଼ା ବାଘର ଚିତ୍କାର ଶୁଣି ଆମ୍ଭମାନଙ୍କର ବଡ଼ ଅଶାନ୍ତି ହୋଇଥିଲା । ଏହି ଘାଟିରେ ଏ ବାଘ ଅନେକ ଅଛନ୍ତି । ସେମାନେ କିଛି ଅନିଷ୍ଟ କରନ୍ତି

ନାହିଁ । ଅନ୍ୟାନ୍ୟ ସ୍ଥାନମାନଙ୍କ ପରି ଏମାନେ ଦଳବଦ୍ଧ ନ ଥିବା କଥା ସ୍ଥାନୀୟ ଲୋକମାନଙ୍କଠାରୁ ବୁଝିଥିଲି । ମାଇ ଅଣ୍ଡିଗ ଉଭୟ ଏକତ୍ର ରହନ୍ତି, ଉଭୟେ ଉଭୟଙ୍କୁ ସାହାଯ୍ୟ କରନ୍ତି, ମାତ୍ର ଛୁଆ ଥିଲେ ଏମାନେ ବିଶେଷ ବିପଜ୍ଜନକ ହୁଅନ୍ତି ।

ପ୍ରତ୍ୟୁଷରେ ଘାଟିରେ ପଶିଲି । ଏହି ଘାଟିର ନାସୀ ନଦୀଭିତରକୁ ପଶି ଯାଇଅଛି । ଏହା ଲମ୍ବାରେ ଅଧ ମାଇଲ, ଉଠାଣିଆ ଓ ପ୍ରସ୍ତରମୟ । ପଶ୍ଚିମପାର୍ଶ୍ୱର ଶିଖର ଉପରକୁ ଉଠି ନଦୀର ରମଣୀୟ ଦୃଶ୍ୟ ଦେଖିନେଲି । ନଦୀର ଗୁରି ଭାଗରୁ ତିନି ଭାଗରେ କଳା ପଥର ପଡ଼ିଅଛି । ବନ୍ୟାବେଳେ ଏହି ପଥର ଉପରେ ୧୦ ଫୁଟ ପାଣି ଉଠେ । ନଦୀର ପୂର୍ବପାର୍ଶ୍ୱରେ ଆଦୌ ପଥର ନାହିଁ । ଏହି ବାଟେ ନୌକା ଯାତାୟାତ କରେ । ଏହି ସ୍ଥାନର ସ୍ରୋତ ଅତି ପ୍ରଖର । ସିନ୍ଦୋଲ ଗଡ଼ରୁ ଆସିଥିବା ବାଟ ଦେଖାଇବା ଲୋକେ ମୋତେ କହିଲେ ଯେ, ମାସକ ଭିତରେ ପାଣି କମି ଯାଇ ପଥର ତଳକୁ ଖସି ଆସିବ । ଘୋର ବର୍ଷାକାଳରେ ପଥରଗୁଡ଼ିକ ପାଣିରେ ଲୁଚିଯାଏ । ସେମାନେ ଆହୁରି କହିଲେ, ଏହି ପଥରଗୁଡ଼ିକ ଅସୁରମାନଙ୍କଦ୍ୱାରା ନିର୍ମିତ ସେତୁର ଅବଶେଷ ମାତ୍ର । ନୌକା କୂଳରେ ଲଗାଇବାର ସୁବିଧା ସ୍ଥାନ ଅଭାବରୁ ଆଜି ଅନେକ ଦୂର ଯିବାକୁ ପଡ଼ିଲା । ସୋନପୁରର ବିପରୀତ ଦିଗରେ ବିଶ୍ରାମ କରିଥିଲୁଁ ।

୭ ତାରିଖ ଅକ୍ଟୋବର । ସୋନପୁର ଗୋଟିଏ ପ୍ରକାଣ୍ଡ ସହର । ଏହା ମହାନଦୀ ଓ **ତେଲ**ନଦୀର ସଙ୍ଗମସ୍ଥଳରେ ଅବସ୍ଥିତ । ଏ ରାଜ୍ୟର ରାଜା ଜାନୁଜିଙ୍କର ଅଧୀନସ୍ଥ ଅଟନ୍ତି । ରାଜା ମୋର ଖବର ନେଲେ ନାହିଁ, କି ମୁଁ ମଧ୍ୟ ତାଙ୍କର ଖବର ନେଇ ନ ଥିଲି । ପରଦିନ ସକାଳେ ମହାନଦୀର କୂଳେ କୂଳେ ଯାଇଥିଲି—ମହାନଦୀ ଭିତରେ ଗୋଟିଏ ଲମ୍ବା ଘାସପୂର୍ଣ୍ଣ ଦ୍ୱୀପ ଅଛି । ତତ୍ପରେ ବନାକୀର୍ଣ୍ଣ ଓ ସମତଳ ପ୍ରଦେଶ ଭିତରେ ଆସି ପଡ଼ିଥିଲି । ଏହାର ଭିତରେ ଭିତରେ ବନ୍ଧୁ ସୁକର୍ଷିତ ହୋଇ ଅଛି । ପାହାଡ଼ଗୁଡ଼ିକରେ ଲେଙ୍କୁଡ଼ା ବାଘ ଛଡ଼ ଆସିଲି, ମାତ୍ର ଏ ସବୁ ସ୍ଥାନ

ଭଲ୍ଲୁ, ବାଘ, ବାର୍‌ହାରେ ପୂର୍ଣ୍ଣ । ମୋର କୁକୁର ସେମାନଙ୍କ ମଧ୍ୟରୁ ଗୋଟିକୁ ରଗାଇବାରୁ ସେ ତାକୁ ଗୋଡ଼ାଇଲା । କୁକୁରଟି ମୋର ପାଲଙ୍କି ତଳେ ଆଶ୍ରୟ ନେବାରୁ ବାହକମାନେ ଭୟ ପାଇ ପାଲଙ୍କି ପକାଇ ପଳାଇଗଲେ ଓ ବାର୍‌ହା ମଧ୍ୟ ଦୌଡ଼ି ପଳାଇଲା । ସୌଭାଗ୍ୟକ୍ରମେ ମୁଁ ଘୋଡ଼ା ଚଢ଼ିଥିଲି ଓ ମୋର ପାଲଙ୍କିଟି ଭାଙ୍ଗି ନ ଥିଲା । ମୁଁ ସେଠାରୁ ଆସି ଗର୍ଦ୍ଦନେଶ୍ୱର* (Gurdunnesser) ଠାରେ ରହିଲି । ଏଠାରେ ଗୋଟିଏ ପ୍ରଧାନ ଗଡ଼ ଅଛି ।

୭ ତାରିଖ ଅକ୍ଟୋବର । ଏହି ଗଡ଼ବଦେଶରେ ସାମାନ୍ୟ ପଇସା ଖୁବ୍ କାମ କରେ । ଯେତେ ନୌକା ପାଇଲି, ସବୁ ଭଡ଼ା ନେଇ ମୋର ଲୋକମାନଙ୍କୁ ନଦୀ ପାର କରାଇ ଦେଇ ବୌଦରାଜ୍ୟରେ ପହଞ୍ଚାଇ ଦେଲି । ଏଠାରେ ନଦୀର ଓସାର ଦେଢ଼ ମାଇଲ । ସେଦିନ ୧୨ ମାଇଲ ଆସି ବୌଦ ସହରରେ ରହିଲି ।

୮ ତାରିଖ ଅକ୍ଟୋବର । ଏଠାରେ ଦିନେ ରହିଲି । ରାଜାଙ୍କର ଦେହ ଭଲ ନ ଥିଲା । ସେ ଜଗନ୍ନାଥ ମନ୍ଦିରକୁ ବାର୍ଷିକ କର ଯୋଗାଡ଼ କରି ପଠାଇବାରେ ବ୍ୟସ୍ତ ଥିଲେ, ଏହି କର ଖାଦ୍ୟସାମଗ୍ରୀ, ଫଳ ଓ ଟଙ୍କାର ସମଷ୍ଟି । ମରହଟ୍ଟାମାନେ ବର୍ତ୍ତମାନ ଟଙ୍କା କାଢ଼ି ନେଇ ଅବଶିଷ୍ଟ ଜିନିଷମାନ ଅଳ୍ପ ପରିମାଣରେ ପଠାଇବା ପାଇଁ ତାଙ୍କୁ ବାଧ୍ୟ କରନ୍ତି ।

୯ ତାରିଖ ଅକ୍ଟୋବର । ଯେଉଁ ବାଟରେ ଆସିଥିଲି, ଠିକ୍ ସେହି ବାଟରେ କଟକ ଫେରିଲି । ବାଟରେ ଡଣ୍ଡିଲୋ ଠାରେ ସାମାନ୍ୟ କାରବାର ଛଡ଼ା ଅନ୍ୟ କିଛି ପରିବର୍ତ୍ତନ ଦେଖି ନ ଥିଲି । ବର୍ଷାଦିନେ ବ୍ୟବସାୟୀମାନେ ଏଠାରୁ ଚାଲି ଯାଇଥିଲେ ।

୧୯ ତାରିଖ ଅକ୍ଟୋବର । ଆଜି କଟକରେ ପହଞ୍ଚି ଦେଖିଲି ଯେ, ଭବାନୀ ପଣ୍ଡିତ ଶିବଭଟ୍ଟ ଦୁର୍ଗରେ ଶିବିର ସ୍ଥାପନ କରି ସହରଠାରୁ

* ଗୋପନେଶ୍ୱର ।

୩ ମାଇଲ ଦୂରରେ ରହିଅଛନ୍ତି । ସେ ମୋଠାକୁ ଅଭିବାଦନ ପଠାଇ ଥିଲେ ଓ ମୁଁ ପରଦିନ ତାଙ୍କ ସହିତ ସାକ୍ଷାତ୍ କରିବାର ଇଚ୍ଛା ପ୍ରକାଶ କରିଥିଲି ।

ପ୍ରତ୍ୟୁଷରେ ମରହଟ୍ଟା ଶିବିରକୁ ଯାଇଥିଲି । ଦେଖିଲି, ଏହା ପ୍ରାଚ୍ୟ ଦେଶୀୟ ଶିବିର ପରି ନୁହେଁ, ଏପରି କି, ଇଂରେଜ ଶିବିରଠାରୁ ମଧ୍ୟ ବିଳାସିତାରେ ନ୍ୟୂନ । ଦରବାର ତମ୍ବୁ ବ୍ୟତୀତ ଅନ୍ୟଗୁଡ଼ିକ କ୍ଷୁଦ୍ରାକାର ଓ ଅଳ୍ପ । ବଜାରରେ କେବଳ ଦରକାରୀ ଜିନିଷଗୁଡ଼ିକ ରହିଥିଲା । ସାଜ ସରଞ୍ଜାମ ଓ ବଳଦ ସଂଖ୍ୟା ଖୁବ୍ କମ୍ । ଦେଖିଲି, ଉଦ୍ୟାନ ସଜ୍ଜିତ ଘୋଡ଼ାଗୁଡ଼ିକୁ ପଡ଼ିଆରେ ବୁଲାଇବାର ଦେଖୁଥିଲେ । ସେ ମୋତେ କହିଲେ ଯେ, ସକାଳବେଳା ମରହଟ୍ଟାର ଏହା ପ୍ରଥମ କର୍ତ୍ତବ୍ୟ । ଆମ୍ଭେମାନେ ଦରବାର୍ ତମ୍ବୁକୁ ଯାଇ ଉଭୟେ ମସନଦ ଉପରେ ବସିଲୁଁ । ତାଙ୍କର ଆଳାପ ବଡ଼ ପ୍ରୀତିପ୍ରଦ ହେଲା । ଏହା ସହିତ ବଙ୍ଗଦେଶର ମୋଗଲମାନଙ୍କ ସହିତ ଆଳାପର ଆଦୌ ସାମଞ୍ଜସ୍ୟ ନ ଥିଲା । ଏହା ଫରାସୀର ପ୍ରଫୁଲ୍ଲତା ସହିତ ସ୍ପେନ୍‌ଆଡ଼ର ଗାମ୍ଭୀର୍ଯ୍ୟ ସଦୃଶ ମନେ ହେଲା । ବୋଧ ହୁଏ ଏ ଦେଶବାସୀମାନେ ଆତ୍ମରକ୍ଷାର୍ଥ ନିଜର ପ୍ରଭୁସମ୍ମୁଖରେ କୃତ୍ରିମ ଗାମ୍ଭୀର୍ଯ୍ୟ ଦେଖାଇବା ଉଚିତ ମନେ କରନ୍ତି । ମୁଁ ଯେ ଏପରି ବର୍ବର ଦେଶରେ ଯାତାୟାତ କରି ରକ୍ଷା ପାଇଅଛୁ, ସେଥିପାଇଁ ମୋତେ ଅଭିନନ୍ଦନ କରି ରାଜାମାନଙ୍କର ବିଶ୍ୱାସଘାତକତା-ସୂଚକ ଗଳ୍ପ କହିଥିଲେ । ତତ୍ପରେ ସେ ମୋତେ ଶୋଇବା ତମ୍ବୁକୁ ନେଇ ଯାଇଥିଲେ । ଏହା ୧୦ ଫୁଟ ଲମ୍ବା, ୬ ଫୁଟ ଚଉଡ଼ା ଓ ୪ ଫୁଟ ଉଚ୍ଚ । ଏଥିରେ ଆମ୍ଭେମାନେ ଗାଲିଚା ଉପରେ ବସିଲୁଁ । ଇଂରେଜ-ମାନଙ୍କୁ ପ୍ରଶଂସା କରି ସେମାନଙ୍କର ବିଦ୍ବେଷ ବଢ଼ାଇବାର ଚେଷ୍ଟା ଦ୍ବାରା ଶିବଭଟ୍ଟ ଯେ ଦୁରଭିସନ୍ଧି ପୋଷଣ କରିଥିଲା, ତାହା ଉପହାସରେ ଉଡ଼ାଇ ଦେଇ ସେ କହିଲେ ଯେ ଜାନୋଜିଙ୍କର ଅବସ୍ଥାନୁସାରେ ଇଂରେଜମାନଙ୍କ ସହିତ ସନ୍ଧିସ୍ଥାପନ ପ୍ରସ୍ତାବ ସେତେବେଳେ ଏକାନ୍ତ ଅସଙ୍ଗତ ଥିଲା । ତହୁଁ ମୁଁ କହିଲି ଯେ ବାର୍ଷିକ କର ଛାଡ଼ି କରି ଓଡ଼ିଶା ଦେଇଦେବା ଲାଭ

କ୍ଲାଇବଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ସ୍ଥାପନର ଶ୍ରେଷ୍ଠ ଉପାୟ । ସେ ଚିନ୍ତା କରି କହିଲେ ଯେ, ସେ କଥାର ଆଲୋଚନା ପରେ ଦେଖା ହେଲେ କରାଯିବ । ତାଙ୍କ ସହିତ ଦରବାର ତମ୍ବୁକୁ ଆସିଲି । ସେଠାରେ ଦେଖିଲି ଯେ, ଜିନ ଓ ଲଗାମ ଭିଡ଼ା ହୋଇଥିବା ଗୋଟିଏ ଘୋଡ଼ା ସିସେସବିଓ (Cicisbeo) ସଦୃଶ ଆକସ୍ମିକ ପ୍ରୟୋଜନ ନିମିତ୍ତ ସଜ୍ଜିତ ଥିଲା । ଦୁଇ ଘଣ୍ଟା ପରେ ତାହା ସ୍ଥାନରେ ଆଉ ଗୋଟିଏ ଘୋଡ଼ା ଆସୁଥିଲା ।

ମୁଁ ପୁନର୍ବାର ମରହଟ୍ଟାଶିବିରକୁ ଯାଇଥିଲି । ଦେଖିଲି, ଭବାନୀ ପଣ୍ଡିତ ମୋର ପ୍ରସ୍ତାବ ସମ୍ବନ୍ଧରେ ଚିନ୍ତା କରିଥିଲେ । ଯଦି ଚୁକ୍ତିକୃତ ଅର୍ଥପ୍ରାପ୍ତିର ନିଶ୍ଚିତତା ହୋଇ ପାରିବ, ତେବେ ଇଂରେଜମାନଙ୍କ ହାତରେ ଓଡ଼ିଶା ଛାଡ଼ିଦେଲେ ଜାନୋଜିଙ୍କର ଅଧିକ ସ୍ୱାର୍ଥ ସାଧିତ ହେବାର ଧାରଣା ତାଙ୍କ ମନରେ ବଦ୍ଧମୂଳ ହୋଇଥିଲା । ମୁଁ ଉତ୍ତର ଦେଲି ଯେ, ଯେତେବେଳେ ଜଣେ ବିଶିଷ୍ଟବ୍ୟକ୍ତି ନାଗପୁରରେ ଅବସ୍ଥାନ କରିବେ, ତାହାଠାରୁ ଆଉ ବଡ଼ ବନ୍ଧକ କଣ ହୋଇ ପାରିବ ? ଦେଶର ବ୍ୟବହାର ଅନୁସାରେ ସେ ମୋତେ ଗୋଟିଏ ହଳଦିଆ ରଙ୍ଗର ମସଲିନ ପୋଷାକ ଦେଇଥିଲେ । କଥାବାର୍ତ୍ତାରେ ସେ ଏପରି ପ୍ରୀତ ହୋଇଥିଲେ ଯେ, ମୁଁ ନାଗପୁରକୁ ପ୍ରେରିତ ହେଲେ ସେ ମୋ ସହିତ ଯିବାପାଇଁ ସ୍ୱୀକୃତି ଦେଇଥିଲେ । ସେ ମୋ ସହିତ ପଗଡ଼ି ବଦଳାଇଥିଲେ । ଏହାଦ୍ୱାରା ଆମ୍ଭେମାନେ ଧର୍ମଭାଇ ହୋଇଥିଲୁଁ ।

୧୩ ତାରିଖ ଅକ୍‌ଟୋବର । କଟକରୁ ବାହାରି ୨୬ ତାରିଖରେ ଉଦ୍‌ଖରେ ପହଞ୍ଚିଲି । ଚୋରମାନଙ୍କ ନିମିତ୍ତ ଉଦ୍‌ଖ ପ୍ରସିଦ୍ଧ । ମୁଁ ସିପାହୀମାନଙ୍କୁ ପହରାରେ ରଖାଇ ଦେଲି । ମୋ ତମ୍ବୁର ପ୍ରହରୀ ଗଛ ଗହଳ ଭିତରେ ଗୋଟିଏ ଲୋକକୁ ଲୁଚିଥିବାର ଦେଖି ଡକାଡକି କରି ଉତ୍ତର ପାଇ ନ ଥିଲା । ରାତି ଦୁଇଟାବେଳେ ଅନ୍ୟ ସିପାହୀ ଆସିବାରୁ ସେ ତାକୁ ଦେଖାଇ ଦେଇଥିଲା । ଅନ୍ଧାର ଭିତରେ ସେ ଲୋକଟି ତମ୍ବୁ ଆଡ଼କୁ ଆସୁଥିବାର

ଦେଖି ପଚାରିବାରେ ଉତ୍ତର ନ ପାଇ ତାକୁ ଗୁଳି କଲି । ହତଭାଗାଟି କେତେ ପାଦ ଯାଇ କଚୁଡ଼ି ହୋଇ ପଡ଼ିଲା । ଶବ ଛନ୍ଦିବା ପାଇଁ ମୁଁ କଟୁଆଳକୁ ଡକାଇଥିଲି । କଟୁଆଳ ଦେଖି କହିଲା ଯେ, ସେ ଜଣେ ବିଖ୍ୟାତ ଚୋର ଓ ବହୁଦିନରୁ ତାର ଖୋଜା ପଡ଼ୁଥିଲା ।

୨୮ ତାରିଖରେ ବାଲେଶ୍ୱରରେ ପହଞ୍ଚିଲି । ସୁବର୍ଣ୍ଣରେଖା ପାର ହୋଇ ଇଂରେଜ ଅଧିକୃତ ରାଜ୍ୟରେ ପୁନର୍ବାର ପଦାର୍ପଣ କରି ବିଶେଷ ଆହ୍ଲାଦିତ ହେଲି । ବର୍ତ୍ତମାନ ଚିନ୍ତା କରି ଦେଖୁଅଛି ଯେ, ଏତେ ବିପଜ୍ଜନକ ଭ୍ରମଣରେ ମଧ୍ୟ ମୋର କଳ୍ପିତ ଗୋଟିଏ ମାତ୍ର କାର୍ଯ୍ୟ କରି ପାରି ନ ଥିଲି । ମାତ୍ର ଏତେ ଅସ୍ୱାସ୍ଥ୍ୟକର ଋତୁରେ ବିପଜ୍ଜନକ ଲୋକମାନଙ୍କ ମଧ୍ୟରେ କାଳ କଟାଇ ଯେ ଜୀବନ ଘେନି ଫେରିଥିଲି, ତାହା ଭାବି ବିଶେଷ ଆନନ୍ଦିତ ହେଲି । ଅଧିବାସୀମାନଙ୍କର ଆଳସ୍ୟ ଓ ମରହଟ୍ଟାମାନଙ୍କର ଜଘନ୍ୟ ବଣ୍ୟତା ଏହି ଉଭୟ କାରଣରୁ ହୀରା ବ୍ୟବସାୟରେ ବାଧା ପଡ଼ିଲା । ଜାନୋଜିଙ୍କ ସହିତ ସନ୍ଧିପ୍ରସ୍ତାବ ତାଙ୍କର ଅବସ୍ଥାବିପର୍ଯ୍ୟୟ ଓ ଗୃହର କଳହ ହେତୁ ହୋଇ ପାରିଲା ନାହିଁ । ଲର୍ଡ଼ କ୍ଲାଇଭଙ୍କ ଶାରୀରିକ ଅସୁସ୍ଥତା ହେତୁ ଓଡ଼ିଶା-ସମର୍ପଣ ନୀତି ଅନୁସରଣରେ ବାଧା ପଡ଼ିଲା । ସେ ବିଶେଷ ଉତ୍ସାହରେ ଏହି ପ୍ରସଙ୍ଗ ଉଠାଇଥିଲେ । ମୋର ଏକାନ୍ତ ମାନସଂ ଆତ୍ମପ୍ରସାଦ ଏହି ଯେ, ଯଦି କେବେ ଏ ପ୍ରସଙ୍ଗ ପୁନର୍ବାର ଉଠିବ, ତେବେ ମୋର ଏହି ଶ୍ରମ-ସ୍ୱୀକାର ସେମାନଙ୍କର କାର୍ଯ୍ୟରେ ଆସିବ ।

———

ମହାରାଜା ଶ୍ରୀରାମଚନ୍ଦ୍ର ଉତ୍କଳ ୟୁନିଭର୍ସିଟି ପ୍ରେସରେ ଶ୍ରୀ ବିଧୁଭୂଷଣ ମିଶ୍ରଙ୍କ ଦ୍ୱାରା ମୁଦ୍ରିତ—୧୯[illegible]

